# ପୃଥିବୀର ଲୋକକଥା

( ପଞ୍ଜାବ )

( ପଞ୍ଚମ ଖଣ୍ଡ )

ଶ୍ରୀ ଲକ୍ଷ୍ମୀଧର ମହାନ୍ତି, ବି: ଏସ୍: ସି:, ଏଲ୍: ଏଲ୍: ବି,
ଓ: ଏସ୍: ଜେ: ଏସ୍: (ଅବସରପ୍ରାପ୍ତ)

ଶ୍ରୀମତୀ ଅନ୍ନପୂର୍ଣ୍ଣା ମହାନ୍ତି, ଏମ୍: ଏ:, ବି: ଇଡ୍:

ନୀଳକଣ୍ଠେଶ୍ୱର ଶିକ୍ଷା ପ୍ରକଳ୍ପ

# ପୃଥିବୀର ଲୋକକଥା

## ପଞ୍ଜାବ

ପଞ୍ଚମ ଭାଗ



ପ୍ରକାଶକ :
ନୀଳକଣ୍ଠେଶ୍ୱର ଶିକ୍ଷା ପ୍ରତିଷ୍ଠାନ
ପୋ: ବଡ଼ଗାଳ, ଜି: ପୁରୀ

ପ୍ରଥମ ପ୍ରକାଶ :
ପ୍ରଥମାଷ୍ଟମୀ, ୧୯୮୭

ଦ୍ୱିତୀୟ ପ୍ରକାଶ :
୩ ଡିସେମ୍ବର, ୨୦୦୨

ପ୍ରଚ୍ଛଦପଟ—ଶ୍ରୀ ରବିନାରାୟଣ ନାୟକ

ମୁଦ୍ରାକର :
ନାରାୟଣ ପ୍ରିଣ୍ଟର୍ସ
କନକା ଛକ, କଟକ-୮

ମୂଲ୍ୟ—୧୦ ଟଙ୍କା ମାତ୍ର

# ନିବେଦନ

ପୂର୍ବେ ଭାରତ କେବେହେଲେ ଏକ ଶାସନାଧୀନ ନ ଥିଲା । କିନ୍ତୁ ଭାରତର ସଂସ୍କୃତି ଏକ ଓ ଅଭିନ୍ନ । ଏହା ମୁନିଋଷିମାନେ ବୁଲି ବୁଲି ପ୍ରଚାର କରୁଥିଲେ । ଇଂରେଜମାନେ ଭାରତ ଦଖଲ କରି ପ୍ରଥମ ଥର ପାଇଁ ଏକ ଶାସନାଧୀନରେ ରଖିବା ଫଳରେ ଲୋକଙ୍କ ମଧ୍ୟରେ ଶାସନଗତ ସମ୍ପର୍କ ରହିଲା । ଭାରତ ମହାନ୍ । ଅଖଣ୍ଡ । କିନ୍ତୁ ସାଧାରଣ ଲୋକଙ୍କ ପାଖରେ ଏହା ଉପସ୍ଥାପିତ ନ କରିବା ଫଳରେ ବିଚ୍ଛିନ୍ନତାକୁ ଆମେ ସୁବିଧା ଦେଉଛୁ ।

ଭାରତ ଏକ ବିଶାଳ ଭୂଖଣ୍ଡ । ମାଟି ସହିତ ଭାଷା, ଖାଦ୍ୟ ଓ ଚଳଣିର ଘନିଷ୍ଠ ସମ୍ପର୍କ । ଫଳରେ ଭାରତ ଭଳି ବିଶାଳ ଦେଶରେ ବିଭିନ୍ନ ପ୍ରକାର ଭାଷା, ଖାଦ୍ୟ ଓ ଚଳଣି ହେବାଟା ଅତ୍ୟନ୍ତ ସ୍ୱାଭାବିକ କଥା ।

ଜାତିର ସଂସ୍କୃତି ହେଉଛି ତା'ର ପ୍ରାଣ । ଆମ ପୂର୍ବପୁରୁଷମାନେ ଆମ ସଂସ୍କୃତିକୁ ସଜାଗ ରଖିବା ପାଇଁ ବହୁ ଉଦ୍ୟମ କରିଛନ୍ତି । ଏହା ବିଭିନ୍ନ ଭାବରେ ପ୍ରକାଶ କରାଯାଇଛି । ଲୋକକଥା ତା ମଧ୍ୟରୁ ଅନ୍ୟତମ । ପ୍ରତି ଅଞ୍ଚଳର ଲୋକକଥା ଏ ଦେଶର ସଂସ୍କୃତିର ଏକ ଅଂଶ । ସାଧାରଣ ଲୋକେ ଏହା ଅନୁଭବ କରନ୍ତୁ । ଏହା ଆମର ଉଦ୍ଦେଶ୍ୟ ।

ଏ ପୁସ୍ତକରେ 'ପଞ୍ଜାବ ଲୋକକଥା' ପରିବେଷଣ କରାଯାଇଛି । ଏଥର ଆପଣ ବିଚାର କରନ୍ତୁ—ଓଡ଼ିଶା ଓ ପଞ୍ଜାବ ସଂସ୍କୃତି କିପରି ଅଭିନ୍ନ । ଭାରତୀୟ ସଂସ୍କୃତିର ଏସବୁ ଅଂଶବିଶେଷ ।

ଲକ୍ଷ୍ମୀଧର ମହାନ୍ତି

# ସୂଚୀପତ୍ର


| ବିଷୟ | ପୃଷ୍ଠା |
| --- | --- |
| ୧ । ବାଘ, ବ୍ରାହ୍ମଣ ଓ ବିଲୁଆ | ୪୯ |
| ୨ । ଝିକ ମେଣ୍ଢାଛୁଆ | ୫୯ |
| ୩ । ସୁବସ୍ତକ ସାରଭୁଙ୍ଗ | ୬୭ |




# ବାଘ, ବ୍ରାହ୍ମଣ ଓ କୋଲୁଆ

ବାଘଟିଏ ଯନ୍ତାରେ ପଡ଼ିଗଲା । ମୁକ୍ତ ହେବା ପାଇଁ ତାର ଅଦ୍ୟମ ଉଦ୍ୟମ । ସେ ଖୁବ୍ ଡେଇଁଲା । ଗଡ଼ିଲା ବି ଅନେକଥର । କ୍ରୋଧରେ ମଧ୍ୟ ବହୁବାର ଗର୍ଜନ କଲା । ସବୁ ବୃଥା । ସବୁ ନିଷ୍ଫଳ । ଶେଷକୁ ସେ ଅସହାୟ ଅନୁଭବ କଲା । ଟିକିଏ ନେଉ ପାଇଁ କି ଭୁଲ୍ ସେ ନକଲା । ସେଥିପାଇଁ ତାର ବହୁ ମନସ୍ତାପ । ସେ ଚୁପ୍ ହୋଇ ବସି ରହିଲା ।

ଭାଗ୍ୟକୁ ବ୍ରାହ୍ମଣଟିଏ ସେଇବାଟେ ଯାଉଥିଲା । ତାକୁ ଦେଖି ବାଘଟି ଆଶାୟୀ । କାକୁତିମିନତି ହୋଇ ସେ ଡାକ ପକେଇଲା— "ହେ ଗୋସେଇଁ ! ଟିକିଏ ଏ ବାଟେ ଆସ । ମୁଁ ଯନ୍ତାରେ ବନ୍ଦୀ । ମୋତେ ଦୟାକର । ମୁଁ ମୁକୁଳିଯାଏ । ଭଗବାନ ତମର ମଙ୍ଗଳ କରିବେ ।"

ବାଘ କଥା ଶୁଣି ବ୍ରାହ୍ମଣଟି ଅବାକ୍ । ସେ କହିଲା "ନାଇଁରେ ବାଘୁ । ମୁଁ ମୋ ବାଟରେ ଯାଉଛି । ତୋ ପାଖକୁ ଯାଇ ଯନ୍ତା ଖୋଲିଲେ, ତୁ ମୋତେ ଶେଷ କରିଦେବୁ । ସେ ଦୁଃସାହସ କରିବାକୁ ମୋର ଛାତି ପତାଉ ନାହିଁ ।"

ବାଘଟି କହିଲା—"ସଂସାରରେ ଯେ ମଙ୍ଗଳ କରେ, ତାର କେହି ଅନିଷ୍ଟ କରନ୍ତି ନାହିଁ । ମୁଁ ଯନ୍ତାରେ ବନ୍ଦୀ । ମୋତେ ତମେ ମୁକ୍ତ କରିବ । ମୁଁ ପୁଣି ତମର କ୍ଷତି କରିବି ? ଏ କ'ଣ ସମ୍ଭବ ? ମୁଁ ଭଗବାନଙ୍କ ନାଁରେ ହାତି ନେଉଛି । ତମର କିଛି କ୍ଷତି କରିବି ନାହିଁ । ବରଂ ତମର ଦାସ ହୋଇ ସେବା କରିବି ।"

ତାପରେ ବାଘଟି ସକେଇ କାନ୍ଦିଲା । ମୁଣ୍ଡପିଟି କାତର ପ୍ରାର୍ଥନା କଲା । ସେ ଜଣେ—ବ୍ରାହ୍ମଣ ଧାର୍ମିକ । ଧର୍ମ ଉପରେ ତାର ବହୁତ ଆସ୍ଥା । ଗଣ ନିୟମରେ ଖୁବ୍ ବିଶ୍ୱାସ । ଯେତେ ପ୍ରକାର ଠାକୁରଙ୍କୁ ଜାଣିଛି, ବାଘଟି ସମସ୍ତଙ୍କ ନାଁରେ ହଲପ୍ ନେଲା ।

ବ୍ରାହ୍ମଣ ଗରିବ । ଦି'ବେଳା ପେଟ ପୂରାଇ ଖାଇବା ତା ପକ୍ଷରେ ସ୍ୱପ୍ନ । ସେ ଭାବିଲା—ବାଘଟି ତାର ଦାସ ହେଲେ, ତାର ଭାଗ୍ୟ ପରିବର୍ତ୍ତନ ହୋଇଯିବ । ସକାଳୁ ଉଠି ତାକୁ ଆଉ ଭିକ ମାଗିବାକୁ ପଡ଼ିବ ନାହିଁ । ଶାନ୍ତିରେ ସେ ସ୍ୱସ୍ତିର ନିଶ୍ୱାସ ମାରିବ । ତା ଛଡ଼ା ବାଘ ହଲପ କରୁଛି । ଭଗବାନଙ୍କ ନାଁରେ ଶପଥ ନେଉଛି ଯେ ତାର କ୍ଷତି କରିବ ନାହିଁ । ତେଣୁ ତାକୁ ବିଶ୍ୱାସ କରିବାକୁ ହେବ ।

ଆହୁରି ଗୋଟିଏ କଥା ମଧ୍ୟ ତା ମନକୁ ଆସିଲା । ସେ ସବୁବେଳେ ଭଗବାନଙ୍କ ନାମ ନିଏ । ଭଗବାନ ଦୟାର ସାଗର । ଦୟାମୟ । ତାର ଭଗବାନଙ୍କୁ ଅନୁସରଣ କରିବା ଉଚିତ । ତାଛଡ଼ା 'ଜୀବେ ଦୟା, ନାମେ ଶ୍ରଦ୍ଧା'—ଶାସ୍ତ୍ରର ପରମବାଣୀ । ଶାସ୍ତ୍ର ବଚନ ମାନିବା ଉଚିତ । ସବୁ ଦୃଷ୍ଟିରୁ ବିଚାର କଲେ, ବାଘକୁ ମୁକ୍ତ କରିବା ତାର କର୍ତ୍ତବ୍ୟ ।

ସେ ଆଉ ହେଳା କଲା ନାହିଁ । ଯନ୍ତା ପାଖକୁ ଯାଇ କବାଟ ଖୋଲି ଦେଲା । ବାଘଟି ଏକା ଡିଆଁକେ ପଦାରେ । ଝାଡ଼ିଝୁଡ଼ି ହୋଇ ଠିଆ ହେଲା । ତା'ପରେ ବ୍ରାହ୍ମଣକୁ ଧରି ପକାଇ କହିଲା—"ତିନଦିନ ହେଲା ମୁଁ ଉପାସ । ଭୋକରେ ମୋର କରଡ଼ ଜଳୁଛି । ମୁଁ ତମକୁ ଏଇନେ ଖାଇବି । ସେଥିପାଇଁ ବାଧାବନ୍ଧନ ଆଉ କିଛି ନାହିଁ ।"

ବାଘ କଥା ଶୁଣି ବ୍ରାହ୍ମଣର ପିଳେହ୍ମ ପାଣି । ତାର ସବୁ ସ୍ୱପ୍ନ ପାଣି ଫୋଟକା ପରି ମିଳେଇଗଲା । ସେ ଏଥିର ନିରୂପାୟ । ଏ ପ୍ରକାର ପରିସ୍ଥିତି ତାର କଳ୍ପନାତୀତ । ତଥାପି ସାହାସ ସଞ୍ଚୟ କରି କହିଲା,–ଉପକାରୀର ଅପକାର କଲେ, ବିପଦ ଅଛି । ମୋ କଥା ମାନ । ମୁଁ ତୋତେ ବିପଦରୁ ଉଦ୍ଧାର କରିଛି । ମୋତେ ଛାଡ଼ିଦେ ।"

ବାଘ କହିଲା—"କେହି କାହା ଖାଦ୍ୟ ଛାଡ଼େ ନାହିଁ । ଥରେ ଛାଡ଼ିଲେ, ଆଉ ଖାଦ୍ୟ ମିଳେ ନାହିଁ । ' ଏ ତ ସଂସାରର ନୀତି । ନ୍ୟାୟ ।"

ବ୍ରାହ୍ମଣ ଦେଖିଲା—ମୁହୂର୍ତ୍ତକ ମଧ୍ୟରେ ବାଘକୁ ନ ବାଗେଇଲେ ତାର ଦଫାରଫା ଶେଷ ହୋଇଯିବ । ତେଣୁ ସେ କହିଲା—"ମୋତେ ଖାଇବା ନ୍ୟାୟ ବୋଲି ତୁ ଯୁକ୍ତି କରୁଛୁ । ମୁଁ କହୁଛି ମୁଁ ତୋତେ ମୁକ୍ତ କରିଛି । ତେଣୁ ମଙ୍ଗଳକାରୀର ଅନିଷ୍ଟ ନ କରିବା ହିଁ ନ୍ୟାୟ । ଆମେ ଦୁହେଁ କେହି କାହା କଥା ମାନିବାକୁ ରାଜି ହେଉ ନଥାଏଁ । ଏ ସ୍ଥଳରେ ଆମେ ମଧ୍ୟସ୍ଥ ମାନିନେବା । ସେମାନଙ୍କ ନିଷ୍ପତ୍ତି ଗ୍ରହଣୀୟ ।"

ବାଘଟି କହିଲା—"ତମେ ଉଚିତ କଥା କହୁଛ । ପ୍ରଥମେ ତିନିଜଣଙ୍କୁ ପଚାର । ଯାହା ସେମାନେ କହିବେ; ମୁଁ ମାନିନେବି । ତମ ଉପରେ ମୋର ବିଶ୍ୱାସ ଅଛି । ମୁଁ ଏଇଠି ବସି ରହିଲି । ତମେ ଯାଇ ବୁଝି ଆସ ।"

ବ୍ରାହ୍ମଣ ଦୀର୍ଘ ନିଶ୍ୱାସ ମାରିଲା । ବେସରକ ହେବାର ତାର କିଛି ନାହିଁ । ସେ ତ ନ୍ୟାୟ କଥା କହୁଛି । ଯାହାକୁ ପଚାରିବ, ସେ ବି ତା ପକ୍ଷରେ ମତ ଦେବ । ଏ ବିଷୟରେ ସେ ଦୃଢ଼ । ତେଣୁ

ସେ ହଁ ମାରିଲେ । ବାଘ କଥାନୁସାରେ ତିନିଜଣଙ୍କ ମତ ସଂଗ୍ରହ ପାଇଁ ବାହାରିଲେ ।

ପ୍ରଥମେ ସେ ଅଶ୍ୱତ୍ଥ ଗଛକୁ ଭେଟିଲେ । ଗଛଟି ବେଶ୍ ବଡ଼ । ଗୁଡ଼ି ଚାରି ଚକଡ଼ାଏ ଜାଗା ମାଡ଼ିବସିଛି । ଭାବିଲେ—ବହୁ ଲୋକ ଏଠାରେ ବସି ଆରାମ କରୁଥିବେ । ତେଣୁ ଗଛଟି ମଣିଷ ସମ୍ପର୍କରେ ବେଶ୍ ଆସିଛି । ତା ଛଡ଼ା ଗୀତାରେ ଭଗବାନ ଏହାକୁ ବୃକ୍ଷରାଜ ବୋଲି କହିଛନ୍ତି । ଏହାଠାରୁ ନ୍ୟାୟ ମିଳିବା ସ୍ୱାଭାବିକ । ସେଥିପାଇଁ ସବୁ କଥା ତାକୁ ଟିକ୍‌ନିଖି କରି କହି ମତାମତ ଲୋଡ଼ିଲା । ବୃକ୍ଷଟି ସବୁ କଥା ଶୁଣିସାରି କହିଲା—"ମୋ ମତରେ ବାଘ ଯାହା କହୁଛି, ତାହା ନ୍ୟାୟ ।"

ଏ କଥା ଶୁଣି ବ୍ରାହ୍ମଣର ହଲକ ଶୁଖିଗଲା । ସେ ଅତି ବିନମ୍ର ଭାବରେ କହିଲା—"କିପରି ?"

ଅଶ୍ୱତ୍ଥ ଗଛଟି କହିଲା—"ଦେଖୁଛ, ମୁଁ ମୋର ଗୁଡ଼ିରେ ସମସ୍ତଙ୍କୁ ଆଶ୍ରୟ ଦିଏ । ନିଦାଘ ଗ୍ରୀଷ୍ମ ସମୟରେ ମଣିଷ ଏଠି ଆରାମ କରେ । କିନ୍ତୁ ସେ କ'ଣ କରେ ? ସେ ଜାଣେ—ମୋର ପତ୍ର ଗୃହପାଳିତ ପଶୁଙ୍କର ସୁଖାଦ୍ୟ । ଦୁହାଁଳିଆ ଗାଈ ଖାଇଲେ, ଅଧିକ ଦୁଧ ଦିଏ । ମୁଁ କରିଥିବା ଉପକାର ମଣିଷ ଭୁଲିଯାଏ । ତାର ସୁବିଧା ପାଇଁ ସେ ମୋର ଡାଳ କାଟେ । ପତ୍ର ସବୁ ଗୃହପାଳିତ ପଶୁଙ୍କୁ ଖୁଆଏ । ଏଇଆ ଯଦି ନ୍ୟାୟ ହୁଏ, ତେବେ ବାଘ ଯାହା କହୁଛି ତାହା ଅନ୍ୟାୟ କାହିଁକି ହେବ ?"

ବ୍ରାହ୍ମଣଟି ନିରୁତ୍ତର । ମୁଣ୍ଡ ନୁଆଁଇ ଆଗକୁ ଚାଲିଲା । ଦେଖିଲା—ମଇଁଷିଟିଏ କୂଅ ସୁରପଟେ ବୁଲି ପାଣି ବାହାର କରୁଛି । ବ୍ରାହ୍ମଣ ଭାବିଲା ମଇଁଷିର ମଣିଷ ସାଥିରେ ସୁସମ୍ପର୍କ । ମଣିଷର ଚଳନ୍ତାଧାର

ମଧ୍ୟ କିଛି କିଛି ଜାଣିଥିବ । ତେଣୁ ନ୍ୟାୟ ଅନ୍ୟାୟ ବାଛିବା ତା ପକ୍ଷେ ଅସୁବିଧା ହେବ ନାହିଁ ।

ତେଣୁ ତା ପାଖକୁ ଯାଇ କହିଲେ—"ବାଘଟିଏ ଯନ୍ତାରେ ପଡ଼ିଥିଲା । ମୁଁ ତାକୁ ଉଦ୍ଧାର କଲି । ବର୍ତ୍ତମାନ ସେ କହୁଛି, ଯେହେତୁ ସେ ଭୋକିଲା, ମୋତେ ସେ ଖାଇବ । ମୁଁ କହିଲି, ଏହା ଅନ୍ୟାୟ । କିନ୍ତୁ ବାଘ କହୁଛି, ଏହା ନ୍ୟାୟ । ଆମ ଭିତରେ ଝଗଡ଼ା ହେବାରୁ ମୁଁ ତମ ପାଖକୁ ଆସିଛି । ତୁମେ ବିଚାର କରି କୁହ, କିଏ ନ୍ୟାୟ ଆଉ କିଏ ଅନ୍ୟାୟ କଥା କହୁଛି ।"

ମଇଁଷିଟି ମୁଣ୍ଡ ଟେକି ବ୍ରାହ୍ମଣକୁ ଚାହିଁଲା । ସତେ ଯେମିତି ସେ ବ୍ରାହ୍ମଣ କଥାରେ ବିସ୍ମିତ । ଟିକିଏ ରହି କହିଲା—"ମଣିଷ ବିଚାରଧାରାରେ ବାଘ ଯାହା କହୁଛି, ତାହା ନ୍ୟାୟ । ଉଦାହରଣ ମୁଁ ନିଜେ । ମୁଁ ଦୁହାଁଳିଆ ଥିଲାବେଳେ ମୋର ସମସ୍ତ ଯତ୍ନ ନିଆହେଉଥିଲା । ଗାବଜସାକ ଜନ୍ମ କଲି । ଦୁଧ ଦେଲି । ବାଛୁରିବି ହେଲେ । ସବୁ ମାଲିକ ନେଲା । ବୁଢ଼ୀ ହେବାରୁ ପାଣି ଟେଣାଉଛି । ଖାଇବାକୁ ପାଣି କୁଣ୍ଡେ ଆଉ କୁଣ୍ଡା ଦିଟା । ମେହନତ ଯଥେଷ୍ଟ । ଏହାହିଁ ଯଦି ନ୍ୟାୟ, ବାଘ ଯାହା କହୁଛି ତାହା ଅନ୍ୟାୟ କିଆଁ ହେବ ?"

ବ୍ରାହ୍ମଣର ମନ ବ୍ୟାକୁଳ । ସେ ଚିନ୍ତିତ । ଯାହା ତାର ଚିନ୍ତାଧାରା ଥିଲା, ତାହା ଅନର୍ଥକ । ମୂଲ୍ୟହୀନ । ସେ ଭାବିଲା— ଦୁଉକୁ ଯାଇ ଲାଭ ନାହିଁ । ରାସ୍ତା ଉପରେ ମଣିଷ ଚାଲୁଛି । ସେ ମଣିଷ ସମ୍ପର୍କରେ ବହୁତ ଆସିଛି । ଭଲ ମନ୍ଦ ବିଚାର କଥା ଶିଖି-ଥିବ । ତାର ଆଶ୍ରୟ ନେଲେ ଭଲ ହେବ । ତେଣୁ ସେ ରାସ୍ତାକୁ

ସମସ୍ତ କଥା କହି ତାର ମତ ଲୋଡ଼ିଲେ । ରାସ୍ତାଟି କହିଲା—"ବାଘ ଯାହା କହୁଛି, ତାହାହିଁ ନ୍ୟାଯ୍ୟ । ଏକଥା ମୁଁ ମୋର ଅଭିଜ୍ଞତାରୁ କହୁଛି । ଦେଖନ୍ତୁ—ସମସ୍ତେ ମୋ ଉପରେ ଚାଲନ୍ତି । ମୁଁ କାହାର କିଛି ଅନିଷ୍ଟ କରେ ନାହିଁ । ତଥାପି ମୋ ପ୍ରତି ଦରଦ ତ ଦୂରର କଥା, ସମସ୍ତେ ମୋ ଉପରେ ଅଦରକାରୀ ଜିନିଷ, ଘାଉଁଶ, ମଇଳା ଓ ଆବର୍ଜନା ଜମା କରନ୍ତି । କହନ୍ତୁ ମୋ ପ୍ରତି ଏଇଟା ଅନ୍ୟାୟ ବୋଲି ଭାବନ୍ତି ନାହିଁ । ବରଂ ଭାବନ୍ତି—ଏଇଟା ନ୍ୟାଯ୍ୟ ।"

ବ୍ରାହ୍ମଣ ଏକଦମ୍ ନିରାଶ ହୋଇଗଲେ । ଭାବିଲେ—ସଂସାରରେ ନ୍ୟାଯ୍ୟ ଅନ୍ୟାୟ କିଛି ନାହିଁ । ବ୍ୟକ୍ତିଗତ ଅଭିଜ୍ଞତା ବିଚାର ଉପରେ ପ୍ରତିଫଳିତ ହୁଏ । ତାକୁ ସେ ନ୍ୟାଯ୍ୟ ବୋଲି ଧରିନିଏ । ଅନ୍ୟକଥା ତାର ବିଚାରକୁ ନିଏ ନାହିଁ । ସବୁ ହିଁ ତାର ଭାଗ୍ୟ । ତାହା ଭଗବାନଙ୍କ ଆଶୀର୍ବାଦ । ସେ ବ୍ୟସ୍ତ ଆଉ ହେଲେନାହିଁ । ପଳାଇବାର କଥା ବି ଚିନ୍ତା କରିଲେ ନାହିଁ ବରଂ ଧିରେ ଧିରେ ବାଘ ଆଡ଼କୁ ଅଗ୍ରସର ହେଲେ । କିନ୍ତୁ ସେ ଅତ୍ୟନ୍ତ ବିଷର୍ଣ୍ଣ । ମନରେ ଅଶେଷ ଦୁଃଖ । ରାସ୍ତାରେ ସେ ଯନ୍ତ୍ରବତ୍ ଚାଲୁଥାଏ । ତାଠି ଜୀବନ ଥିବା କଥା ତାକୁ ଜଣା ପଡ଼ୁନଥାଏ ।

ଏଇ ମୁହୂର୍ତ୍ତରେ ବିଲୁଆ ସାଥିରେ ତା'ର ଦେଖା । ବିଲୁଆ ତାର ପୂର୍ବ ପରିଚିତ । ସବୁବେଳେ ବ୍ରାହ୍ମଣ ହସଖୁସି ଥିବାର ସେ ଦେଖି ଆସିଛି । ଆଜି ପ୍ରଥମ କରି ସେ ଦେଖୁଛି, ବ୍ରାହ୍ମଣ ମୁହଁଟି ମଳିନ । ବିଷର୍ଣ୍ଣ । ଶୁଷ୍କ । ଆଖିରେ ତାର ଲୁହ ଡଳ ଡଳ । ସତେକି ଟିକିଏ ସୁବିଧା ପାଇଲେ, ଶ୍ରାବଣର ବର୍ଷାଧାରା ପରି ଲୁହ ଗାଳି ପକାଇବ ।

ବିଲୁଆ କହିଲା "ଗୋସେଇଁ ଠାକୁର । ଆଜି କାହିଁ ମନ ମଳିଯାଇଛି ।"

ବ୍ରାହ୍ମଣ ସବୁଦିନ ପରି ହାତ ଟେକି ଆଶୀର୍ବାଦ କଲେନାହିଁ । ବରଂ ବାଷ୍ପରୁଦ୍ଧ କଣ୍ଠରେ କହିଲେ—"ଆଜି ତୋ ସାଥିରେ ଶେଷ ଦେଖା । ସେଠାରେ ବାଘ ଅପେକ୍ଷା କରି ବସିଥିବ । ଗଲେ ସେ ମୋତେ ଖାଇବ ।"

ବିଲୁଆ ଏ କଥାର ମର୍ମ ବୁଝି ପାରିଲା ନାହିଁ । ତେଣୁ କଥାଟା କଣ ଜାଣିବାକୁ ଚାହିଁଲା । ଗୋଟି ଗୋଟି କରି ବ୍ରାହ୍ମଣ ସବୁକଥା ତାକୁ କହିଲେ । କଣ୍ଠ ତାର ବାଷ୍ପରୁଦ୍ଧ । ସେ ଶୋକାକୁଳ । ବିଲୁଆଟି ଧ୍ୟାନ ଦେଇ ସବୁ ଶୁଣୁଥାଏ । ବ୍ରାହ୍ମଣ କହିସାରିଲା ପରେ, ବିଲୁଆ କହିଲା—"ନନା, ସବୁ କହିଲ ଯେ, କିନ୍ତୁ ମୁଁ କିଛି ବୁଝିପାରିଲି ନାହିଁ । ଆଉ ଥରେ କୁହ ।"

ବିଲୁଆକୁ ବ୍ରାହ୍ମଣ ଆଉଥରେ କଥାଟା ବୁଝାଇଦେଲେ । ସବୁଶୁଣି ବିଲୁଆ ମୁଣ୍ଡ ହଲାଇ କହିଲା—"ନାଁ, କିଛି ବୁଝି ହେଉନାହିଁ ।" ବ୍ରାହ୍ମଣ ବିଲୁଆକୁ ବାରମ୍ବାର ବୁଝାଇବାକୁ ଲାଗିଲେ । ତେବେ ବି ବିଲୁଆ କଥାଟା ଧରି ପାରିଲା ନାହିଁ । ବ୍ରାହ୍ମଣ ଏଥିପାଇଁ ମନେ ମନେ କ୍ଷୁବ୍‌ଧ । କିନ୍ତୁ ସେ କଥା କହିବାକୁ ସାହସ କୁଳଉ ନାହିଁ । ଖାଲି ବଢ଼ିକ୍ତ ଭାବ ତାର । ତା କଥାରୁ କେବଳ ଜଣାପଡ଼ୁଥାଏ । ବିଲୁଆ ଏଇ ମଉକା ଦେଖି କହିଲା-"ତୁମେ କଥାଟା ଠିକ୍ ଭାବରେ ବୁଝାଇ ପାରୁନ । ତୁମକଥା ଏକାନେ ପଶି ସେ କାନେ ବାହାରି ଯାଉଛି । ଚାଲ, ଜାଗା ମୁଣ୍ଡକୁ ଯିବା । ଆଖିରେ ଦେଖିଲେ କଥାଟା ସହଜରେ ବୁଝି ହୋଇଯିବ ।"

ବ୍ରାହ୍ମଣ ଓ ବିଲୁଆ ସାଥି ହୋଇ ଯନ୍ତା ପାଖକୁ ଆସିଲେ । ବାଘଟି ଯନ୍ତା ପାଖରେ ବ୍ରାହ୍ମଣକୁ ଅପେକ୍ଷା କରି ବସିଥିଲା ।

ସମସ୍ତ ଓଜନ ହାଲୁକା କରିବାକୁ ସେ ତାର ପଞ୍ଝା ଗୁଣ୍ଟିବାରେ ବ୍ୟସ୍ତ । ଏତିକିବେଳେ ବ୍ରାହ୍ମଣ ଓ ଭାଲୁଆ ସେଠି ପହଞ୍ଚିଗଲେ । ବାଘ ସେମାନଙ୍କୁ ଦେଖି ଖୁସି । ଏକାବେଳେକେ ଦୁଇ ଦୁଇଟା ଖାଦ୍ୟ । ଏହା ଭାଗ୍ୟରେ ଥିଲେ ମିଳେ । କିନ୍ତୁ ତା'ର ମନର ଆନନ୍ଦ ଦେଖେଇବାକୁ ସେ ପ୍ରସ୍ତୁତ ନୁହେଁ । ସେ ଟିକିଏ ବିରକ୍ତିଆ ହୋଇ କହିଲା—"ଏତେ ଡେରି ? ଭୋକରେ ମୋ ପେଟ ଜଳୁଛି । ଅନେଇ ଅନେଇ ଆଖିରୁ ପାଣି ବହିଲାଣି । ମୁଁ ଆଉ ସମ୍ଭାଳି ପାରୁନାହିଁ । ଶୀଘ୍ର ଆସ । ମୁଁ ଖାଏ ।"

ବାଘର ଖାଇବା କଥା ଶୁଣି ବ୍ରାହ୍ମଣ ଭୟରେ ଥରିଲା । ତା'ର ହାଲକ ଶୁଖିଗଲା । ତା ପାଟି ଖନ ମାରିଲାଣି । ତଥାପି ଦମ୍ଭ ଧରି କହିଲା "ଭାଲୁଆ ସବୁକଥା ଜାଣିବାକୁ ଚାହୁଁଛି । ମୁଁ ଯେତେ ବୁଝାଇଲେ ବୁଝୁନାହିଁ । ଜାଗା ଉପରେ ସେ ସବୁ ଦେଖିବ ବୋଲି କହୁଛି । ମୋତେ ପାଞ୍ଚ ମିନିଟ ସମୟ ଦିଅ । ମୁଁ ତାକୁ କଥାଟା ବୁଝାଇ ଦିଏ ।

ବାଘ ମନେ ମନେ ଭାବିଲା, ବ୍ରାହ୍ମଣ ଏଇନେ ମରିବ । ତାର ଶେଷ ଅନୁରୋଧ ରକ୍ଷା କରିବା ଉଚିତ । ତାପରେ କହିଲା—"ମୁଁ ଅପେକ୍ଷା କରୁଛି । ତୁ ବୁଝା ।"

ବ୍ରାହ୍ମଣ କଥାଟାକୁ ପୁଣି ଆରମ୍ଭ କଲା । ଟିକିନିଖି କରି ସବୁ କଥା ଭାଲୁଆକୁ କହୁଥାଏ । କିଛି ବି ଛାଡ଼ିଲା ନାହିଁ । କଥାଟା ଲମ୍ବାଇ ଲମ୍ବାଇ କହିବାରୁ ଖୁବ୍ ବଡ଼ ହୋଇଗଲା ।

ତଥାପି ଭାଲୁଆଟି କହିଲା "ମୋର ବୁଦ୍ଧି କମ୍ । ମୁଁ କଥାଟି ଧରି ପାରୁନାହିଁ । ଏଇଟା ଯନ୍ତ୍ରଣା ନା । କିମିତି କଥାଟା ଆରମ୍ଭ

ହେଲା ? ବ୍ରାହ୍ମଣକୁ ଅନାଇ ବିଲୁଆ କହିଲା, "ଆପଣ ଏ ଯନ୍ତାରେ ଥିଲେ ?"

ବାଘଟି ଚାଲି ଚାଲି ଯନ୍ତା ପାଖକୁ ଆସିଲା । କହିଲା, "ଆରେ ଗୁଣ୍ଡ୍ ବକ୍ । ମୁଁ ଯନ୍ତାରେ ଥିଲି ।"

"ଅଚ୍ଛା !" ବାଘକୁ ଦେଖାଇଲା ଭଳି ସେ ଭାବୁଲେ ଥର ଥର କହି ଚାଲିଲା—"ହଁ, ହଁ ଆପଣ ଯନ୍ତାରେ ଥିଲେ । ନାଁ ନାଁ ଆପଣ ନୁହଁ, ବ୍ରାହ୍ମଣ । ନାଇଁ ମୋ ମୁଣ୍ଡ ଖରାପ ହୋଇଯାଉଛି । ମୋ ବୁଦ୍ଧି ହଜି ଯାଉଛି । ବାଘ, ବ୍ରାହ୍ମଣ, ଯନ୍ତା ପାଖକୁ ଚାଲିଚାଲି ଆସିଲେ··· ।"

ରାଗରେ ବାଘ ଗର୍ଜି ଉଠିଲା—"ହେ ବିଲୁଆ, କେଡ଼େ ବୋକା ତୁ । ମୁଁ ଯନ୍ତାରେ ଥିଲି, ତୁ ଏ କଥାଟା ବୁଝିପାରୁନାହୁଁ ? ଦେଖ, ମୁଁ ତୋତେ କଥାଟା ବୁଝାଇ ଦେଉଛି । 'ମୁଁ ବାଘ । ବୁଝିଲୁ ।"

"ହଁ ପ୍ରଭୁ ।

"ଏ ହେଉଛି ବ୍ରାହ୍ମଣ ।"

"ହଁ ମହାପ୍ରଭୁ ।"

"ଏଇଟା ଯନ୍ତା ।"

"ହଁ ମହାପ୍ରଭୁ ।"

"ମୁଁ ଏଇ ଯନ୍ତାରେ ଥିଲି । ବୁଝିଲୁ ?"

"ହଁ-ନାଁ ।···ଦୟା କରନ୍ତୁ, ମହାପ୍ରଭୁ ।"

ଅସ୍ଥିର ହୋଇ ବାଘ ଗର୍ଜି ଉଠିଲା—"ଆଚ୍ଛା ।"

"ଆପଣ କିପରି ଏଇ ଯନ୍ତାକୁ ଗଲେ ମହାପ୍ରଭୁ ?"

"କପର ? ଯେମିତ ଯନ୍ତାକୁ ଯାଆନ୍ତୁ ।"

"ମୋ ମୁଣ୍ଡ ବୁଲଇ ଯାଉଛି, ମହାପ୍ରଭୁ । ମୋ ଉପରେ ରାଗନ୍ତୁ ନାହିଁ । କେମିତ ଯନ୍ତାକୁ ଯାଆନ୍ତୁ ମୁଁ ବୁଝି ପାରୁନାହିଁ ।"

ଏହା ଶୁଣି ବାଘ ଅଧୈର୍ଯ୍ୟ ହୋଇ ଯନ୍ତା ଭିତରକୁ ତେଇଁ-ପଡ଼ି ଚିତ୍କାର କଲା । "ଏଇମିତ ଭାବରେ—ଏଥର ବୁଝି ପାରିଲୁ ତ ?"

"ହଁ ଆଜ୍ଞା ! ଏଥରକ ବୁଝିଗଲି" ଦାନ୍ତ ଦେଖାଇ ବଲୁଆଟି କହିଲା । ଚତୁରତାର ସହିତ ସେ ଆସ୍ତେକିନା ଯନ୍ତା କବାଟଟି ବନ୍ଦ କରିଦେଲା । ତାପରେ କହିଲା "ମୋତେ ଯଦି ମତ ଦେବାକୁ କହିବେ ମୁଁ କହିବି, କଥାଟି ଏଇଠାରେ ଥାଉ ।"



# ଟିକି ମେଣ୍ଢାଛୁଆ

ଟିକି ମେଣ୍ଢାଛୁଆଟିଏ । ଗୋଡ଼ରେ ଜୋର ବି ହୋଇନାହିଁ, ଧୀରେ ସୁସ୍ଥେ ଚାଲିବାକୁ ସେ ଅକ୍ଷମ । ଏବେ ମଧ୍ୟ ସେ ଚାଲିଲାବେଳେ ଟଳମଳ, କିନ୍ତୁ ଡେଇଁବାରେ ତାର ହେଳା ନାହିଁ । ଖୁବ୍ ସେ ଡ଼େଏଁ । ଡେଇଁବାରେ ହିଁ ତାର ଆନନ୍ଦ । ବହୁତ ମଜା ପାଏ ସେଥିରୁ ସେ ।

ପିଲାମନ ତ ! ଆଈ ଆସିଥିଲା । ଖୁବ୍ ଗେହ୍ଲା କରିଛି । ତେଣୁ ଆଈ ଘରକୁ ଯିବାକୁ ତାର ମନ ହଉଛି । ଧଡନେ ସେ ଆଈ ଘରକୁ ବାହାରି ପଡ଼ିଲା । ବାଟଯାକ ଡେଇଁ ଡେଇଁ ଚାଲିଥାଏ । "ଆଈ ଘରେ ପହଞ୍ଚିଲେ, ଆଈ ତାକୁ ଗେହ୍ଲା କରିବ । ଖୁବ୍ ଖାଇବାକୁ ଦେବ । ଆଉଟ ଜମା କରିବ ନାହିଁ । କି ମଜା !" ଏକଥା ଭାବି ମନ ତାର କୁରୁଳି ଉଠିଲା । ତାପରେ ତାକୁ ଦେଖେ କିଏ ? ସେ ଖୁବ୍ ଜୋର୍‌ରେ ଡେଇଁ ଡେଇଁ ଚାଲିଲା ।

ଆଈ ଘର ବାଟରେ ଜଙ୍ଗଲ । ସେ ସେଇ ଜଙ୍ଗଲ ଭିତରେ ଡେଇଁ ଡେଇଁ ଯାଉଥାଏ । ସେ ତ ପିଲା । ମନକୁ ଡର ଭୟ ଏ ପର୍ଯ୍ୟନ୍ତ ଛୁଇଁ ନାହିଁ । ହିଂସ୍ର ଜନ୍ତୁଙ୍କର ପ୍ରତାପ ସମ୍ବନ୍ଧରେ ସେ ଅଜ୍ଞ ।

ହଠାତ୍ ତାର ବାଟରେ ବିଲୁଆ ସାଥିରେ ଭେଟ । ତାକୁ ଦେଖି ବିଲୁଆର ଆନନ୍ଦ କହିଲେ ନ ସରେ । ଭାବିଲା, ଆପେ ଆପେ ଖାଦ୍ୟଟିଏ ଜୁଟିଯାଇଛି । ତାକୁ ଖାଇ ଏ ବେଳାଟା ମାରି-ନେବ । ତେଣୁ ସେ ଟିକି ମେଣ୍ଢାଛୁଆଟିକୁ ଖାଇବାକୁ କହିଲା ।

ମେଣ୍ଢାଛୁଆଟିର ବଲୁଆକୁ ଭୟ ନାହିଁ । ବରଂ ବଲୁଆ କଥା ଶୁଣି ସେ ଗ୍ଲୋଚ ଡ଼ିଆଁଟିଏ ଦେଲା । ବଲୁଆକୁ କହିଲା—"ହଇରେ ବଲୁଆ ନନା ! ମୁଁ ଏତେ ଗ୍ଲୋଚ ଯେ, ତୁ ମତେ ଖାଇଲେ ତୋର ପାଟିକୁ ଲାଗିବ ନାହିଁ କି ପେଟ ବି ପୂରିବ ନାହିଁ । ତେଣୁ ତୁ ମୋତେ ଖା ନାହିଁ । ଗୋଟିଏ କଥା କର । ମୁଁ ଆଈ ଘରକୁ ଯାଉଛି । ସେଠି ଖାଇପିଇ ମୋଟା ହେବି । ଫେରିଲାବେଳେ ତୁ ମୋତେ ଖାଇବୁ ଯେ, ତୋ ପେଟ ପୂରିଯିବ ।"

ବଲୁଆ ଭାବିଲା—ଗ୍ଲୋଚ ହେଲେ କ'ଣ ହେବ, ମେଣ୍ଢାଛୁଆର ବୁଦ୍ଧି ପ୍ରଖର । ଯୁକ୍ତିଯୁକ୍ତ । ସେ ଯାହା କହିଲା ତା ସତ । ସେ ଯାଉ । ଫେରିଲା ବାଟରେ ତାକୁ ଖାଇବି । ତେଣୁ ସେ କହିଲା— "ତୋ କଥା ମୁଁ ବୁଝିଲି । ତୁ ଏଥର ଯା । କିନ୍ତୁ ତୁ ତୋ କଥା ଯେମିତି ରଖୁ ।"

ମେଣ୍ଢାଛୁଆଟି ଶୁଣି ତା ବାଟରେ ଆନନ୍ଦରେ ଡେଇଁ ଡେଇଁ ଚାଲିଗଲା । ବାଟରେ ତାଭ ପୁଣି ଶାଗୁଣା ସାଥିରେ ଦେଖା । ତାକୁ ଖାଇବାକୁ ଶାଗୁଣାଟିର ଇଚ୍ଛା । ସେ କଥା ସେ ପ୍ରକାଶ କଲା ।

ମେଣ୍ଢାଛୁଆଟି ଟିକଏ ଡେଇଁପଡ଼ି କହିଲା—"ଶାଗୁଣା ଭାଇ ! ମୁଁ ତୋର ଖଣ୍ଡେ ହେବି ନାହିଁ । ବରଂ ଅପେକ୍ଷା କର । ମୋତେ ଆଈ ଘରକୁ ଯିବାକୁ ଦେ । ମୁଁ ସେଠି ଖାଇପିଇ ମୋଟା ହୋଇଯିବି । ଫେରିଲାବେଳେ ତୁ ମତେ ଖାଇବୁ । ତୋ ପେଟ ପୂରିବ । ତୁ ମଜା ବି ପାଇବୁ ।"

ଶାଗୁଣାଟି ଭାବିଲା ମେଣ୍ଢାଛୁଆ କଥା ମନ୍ଦ ନୁହେଁ । ଏଇଟାକ ଖାଇଲେ, ନାଁ ସରିବ, ପେଟ କିନ୍ତୁ ପୂରିବ ନାହିଁ । ତେଣୁ ତାକୁ

ସେ ଗୁଣ୍ଡ଼ ଦେଲା । ତାପରେ ମେଣ୍ଢାଛୁଆର କି ଆନନ୍ଦ! ଖୁବ୍ ଜୋର୍‌ରେ ସେ ଡେଇଁ ଗଳିଲା ।

ବାଟରେ ତାର ଚଧିଆ, ବାଘ, କୁକୁର ଓ ଛଅଁାଣ ସାଥିରେ ଦେଖା । ସମସ୍ତେ ଗୋଟ ଛୁଆଟିକୁ ଖାଇବାକୁ ଆଗ୍ରହୀ । ଇଚ୍ଛା ବ ପ୍ରକାଶ କଲେ । ମେଣ୍ଢାଛୁଆ ନଭୟରେ ଗୋଟିଏ ଗ୍ଲୋଟ ଡ଼ିଆଁ-ମାରେ । କୁଣ୍ଡରେ ତାର ସେଇ ଗୋଟିଏ କଥା । ଆଈ ଘରେ ଖାଇପିଇ ମୋଟା ହୋଇ ଆସିଲେ ତାକୁ ସେମାନେ ଖାଇବେ । ତା କଥାଟି ଏତେ ଯୁକ୍ତିଯୁକ୍ତ ଯେ ସମସ୍ତେ ବୋଧ ହୋଇଗଲେ । କେହି ତାକୁ ଅଟକାଇଲେ ନାହିଁ । ଶେଷରେ ମେଣ୍ଢାଛୁଆଟି ଆନନ୍ଦରେ ଆଈ ଘରେ ପହଞ୍ଚିଗଲା ।

ମେଣ୍ଢାଛୁଆଟି ଯାହା ଭାବୁଥିଲା ତାହା ଅକ୍ଷରେ ଅକ୍ଷରେ ସତ । ଆଈ ତାକୁ ଦେଖି ଭାରି ଖୁସି । କେତେ ଚେହ୍ଲା କଲା । ଆଦର ଯତ୍ନର ସୀମା ନାହିଁ । କେତେପ୍ରକାର ବଡିଆ ବଡ଼ିଆ ଜିନଷ ଖାଇବାକୁ ବ ଆଣିଦେଲା । ମେଣ୍ଢାଛୁଆର ସବୁଦନ ଭୋଜ । ତା ପେଟ ପୁରି ଫାଟିଗଲା ପରି ଲାଗେ । ତେବେ ବ ଆଈ ତାକୁ ବଳେଇ ବଳେଇ ଖୁଆଏ ।

ଆଈ ପାଖେ ବସି ମେଣ୍ଢାଛୁଆ ସଞ୍ଜବେଳେ ସୁଖ ଦୁଃଖ ହେଲା । ସେଭିକାବେଳେ ଆଈକୁ କହିଲା "ଆଈ ଲେ ! ଯେ ଯାହା କହେ, ତା କଥା ସେ ରଖେ । ନହେଲେ, ଲୋକେ ବାହାପିଆ ବୋଲି କହିବେ । ମୁଁ କହି ଆସିଛି ଆଈ ଘରେ ଖାଇପିଇ ମୋଟା ହେବି । ତୁ ଟିକଏ ମୋତେ ମୋଟା କରିଦେଲେ ମୁଁ ଫେରିବି ।"

ଆଈ ନାତିର କଥା ଶୁଣି ମୁଗ୍‌ଧ । ଆଈ ଘରେ ଗୋଟିଏ କୋଠି ଥାଏ । ସେଥିରେ ଖାଦ୍ୟଶସ୍ୟ ସାଇତା ହୋଇଥାଏ ।

ଆଈ ସେଇ କୋଠିକୁ ମେଣ୍ଢାଛୁଆକୁ ଦେଖାଇ କହିଲା—"ମନ-ଇଚ୍ଛା ଏଠୁ ଖାଇବୁ । ନିଶ୍ଚୟ ମୋଟା ହୋଇଯିବୁ ।"

ମେଣ୍ଢାଛୁଆଟି ତ ଲୋଭୀ । ଦିନସାରା ସବୁବେଳେ ସେ କୋଠିରେ ଭକ୍ଷ ଖାଇଲା । ସାତଦିନ ବେଳକୁ ଗୋଲ ବୁଲିଗଲା । ଏମିତିକ ଚାଲିବା ତା ପକ୍ଷେ କଷ୍ଟ । ଆଉ ସେ ଡେଇଁ ପାରିଲା ନାହିଁ । ହଂସ ପରି ହଲି ଦୋହଲି ଧୀରେ ଧୀରେ ଚାଲେ ।

ମେଣ୍ଢାଛୁଆ ଆସିବାର ଆଠ ନଅଦିନ ହୋଇଗଲାଣି । ଆଈ କହିଲା—"ତୁ ତ ମୋଟାସୋଟା ହୋଇଗଲୁଣି । ମା ତେଣେ ବ୍ୟସ୍ତ ହେଉଥିବ । ଏଥର ତୁ ଘରକୁ ଯା ।"

ମେଣ୍ଢାଛୁଆଟି ଘରକୁ ଫେରିବାକୁ ଏକବାରେ ନାରାଜ । ଆଈ ବାଧ୍ୟ କରିବାରୁ ସେ କହିଲା "ମୁଁ ତ ମୋଟା ହୋଇଗଲିଣି । ମୋ ଦେହ ମାଉଁସିଆ ଦେଖାଗଲାଣି । ବାଟରେ ମୋତେ ହିଂସ୍ର-ଜନ୍ତୁମାନେ ଦେଖିଲେ ଲୋଭେଇବେ । ନିଶ୍ଚୟ ମାରି ଖାଇଦେବେ । ମୁଁ ଜମା ଯିବି ନାହିଁ ।"

ମା ତେଣେ ବ୍ୟସ୍ତ ହେଉଥିବ ବୋଲି ଆଈ ତାକୁ ଯିବାକୁ ବାଧ୍ୟ କଲା ।

ମେଣ୍ଢାଛୁଆ ଭାବିଲା—ସେ ଏତେ ମୋଟା ହେଲାଣି ଯେ, ଡେଇଁ ଡେଇଁ ଯାଇ ପାରିବ ନାହିଁ । ଚାଲିବା ବି ତା ପକ୍ଷେ ଅସମ୍ଭବ । ସେ କେବଳ ଗଡ଼ି ଗଡ଼ି ଯାଇପାରେ । ଖାଲି ଦେହରେ ଗଡ଼ିଲେ ଦେହ ଖଣ୍ଡିଆ ଖାବରା ହୋଇଯିବ । ତା'ଭାଇ ତ ମରିଯାଇ ଥାଏ । ଚମଡ଼ାଟି ତାର ଆଈଘରେ ପଡ଼ିଛି । ଯଦି ଆଈ

ତା ଦେହରେ ସେଇ ଚମଡ଼ାକୁ ଗୁରେଇ ଦେବ । ତେବେ ସେ ଗୋଟିଏ ଢୋଲ୍‌କ ପାଲଟିଯିବ । ତା ପରେ ସେ ଗଡ଼ି ଗଡ଼ି ଚାଲିଯିବ । ତା ଦେହରେ ଆଘାତ ଲାଗିବ ନାହିଁ । ତାକୁ କେହି ଚିହ୍ନି ମଧ୍ୟ ପାରିବେ ନାହିଁ । ସେ ନିର୍ବିଘ୍ନରେ ଘରେ ପହଞ୍ଚିଯିବ ।

ଏ କଥା ସେ ଆଈକୁ କହିଲା । ଆଈର ଏଥିରେ ଆପତ୍ତି କରିବାର କିଛି ନ ଥିଲା । ସେ ଓଲଟି ଖୁସି ହୋଇ ତା ଘରର ଚମଡ଼ାଟିକୁ ଆଣିଲା । ମେଣ୍ଢାଛୁଆ ଦେହରେ ଗୁରାଇଦେଲା । ରୁମୁରୁମିଆ ପଟଟି ଭିତରେ ରଖି ଦେଇଥାଏ । ବାହାର ପଟଟା ବେଶ୍ ଚକ୍‌କଣ । ମେଣ୍ଢାଛୁଆଟି ବାହାରକୁ ଗୋଟିଏ ଗ୍ଲେଟ ଭ୍ରମ ପରି ଦେଖାଯାଉଥିଲା । ବାହାରେ ଚମଡ଼ା । ଭିତରେ ମେଣ୍ଢା ଲୋମ । ତା ଭିତରେ ମେଣ୍ଢାଛୁଆ । ତାକୁ ବେଶ୍ ଆରାମ ଲାଗୁଥାଏ । ମେଣ୍ଢାଛୁଆ ବାହାରିଲା । ଗଡ଼ଗଡ଼ ହୋଇ ଗଡ଼ି ଗଲାବେଳେ ତାକୁ ଜମା କାଟୁ ନ ଥାଏ । ବରଂ ସେ ଆନନ୍ଦରେ ଟମ୍ ପା·· ଟମ୍ ପା ବୋଲି ଚିତ୍କାର କରୁଥାଏ ।

ବାଟରେ ପ୍ରଥମେ ଛଞ୍ଚାଣର ନଜର ତା ଉପରେ ପଡ଼ିଗଲା । ସେ ପଚାରିଲା—

"ଢୋଲକ ଭାଇରେ ଢୋଲକ ଭାଇ
ମେଣ୍ଢାଛୁଆଟିକୁ ଦେଖିଛୁ କାହିଁ ?"

ମେଣ୍ଢାଛୁଆ ତ ଆରାମରେ ଢୋଲ ଭିତରେ ଅଛି । ସେ କାହିଁକି ଛଞ୍ଚାଣକୁ ଖାତିର କରିବ ? ସେ କହିଲା—

"ମୋ ତ ବଣରେ ଯିବଣି ହଜ
ମୁଁ କାହୁଁ ପାଇବି ତାହାକୁ ଖୋଜ ।"

ଛୁଆଟି ନିରାଶ ହୋଇ ଦୀର୍ଘନିଶ୍ୱାସ ମାରିଲା । ମେଣ୍ଢାଛୁଆର ଆନନ୍ଦ କିଏ ଦେଖେ ? ସେ ହସି ହସି ବେଦମ୍ । ତାପରେ ଗଡ଼ି ଗଡ଼ି ଚାଲିଗଲା ।

ବାଟରେ ତାକୁ ବାଘ, ଗଧିଆ, କୁକୁର, ଶାଗୁଣା ସମସ୍ତେ ଦେଖିଲେ । ସମସ୍ତଙ୍କର ତାକୁ ସେଇ ଗୋଟିଏ ପ୍ରଶ୍ନ ।

"ଢୋଲକ ଭାଇରେ ଢୋଲକ ଭାଇ,
ମେଣ୍ଢାଛୁଆଟିକୁ ଦେଖିଛୁ କାହିଁ ?"

ମେଣ୍ଢାଛୁଆର ସମସ୍ତଙ୍କୁ ସେଇ ଗୋଟିଏ ଉତ୍ତର—

"ମିଁ ଇ ତ ବଣରେ ଯିବଣି ହଜି
ମୁଁ କାହୁଁ ପାଇବି ତାହାକୁ ଖୋଜି ।"

ସମସ୍ତେ ଦୀର୍ଘନିଶ୍ୱାସ ପକାନ୍ତି । ହାବନ୍ତି—ମେଣ୍ଢାଛୁଆ କଥାରେ ତାଙ୍କର ଲାଜ ହେବା ଉଚିତ ନ ଥିଲା । ତାକୁ ଛାଡ଼ିଦେଇ ଭୁଲ କରିଛନ୍ତି ।

ବଲୁଆ ଘୁଷୁରି ଘୁଷୁରି ଆସୁଥିଲା । ଘୁଷୁରି ମେଣ୍ଢାଟି ଗଡ଼ି ଗଡ଼ି ଯାଉଥିବା ଦେଖି ଅଟକିଗଲା । ତାର ଆଖି ତୀକ୍ଷ୍ଣ । କୁଞ୍ଚ ଭଳି ହବୁଠି ଗଳିଯାଏ ସେ ଚିତ୍କାର କଲା "ହେ ଢୋଲକ, ଠିକ୍ ମିଁ ମିଁ କିଆ ମେଣ୍ଢାଛୁଆକୁ ଦେଖିଛୁ କି ?"

ଆନନ୍ଦରେ ଢୋଲ ଭିତରେ ଗଡ଼ୁ ଗଡ଼ୁ ମେଣ୍ଢାଛୁଆଟି କହିଲା—

"ମିଁଇ ତ ବଣରେ ଯିବଣି ହଜି,
ମୁଁ କାହୁଁ ପାଇବ ତାହାକୁ ଖୋଜି ।"

ସ୍ୱରରୁ ଭଲୁଆ ମେଣ୍ଢା ଛୁଆଟିକୁ ଠଉରାଇ ନେଲା । ତାପରେ ଚିତ୍କାର କଲା, "ତୁ ଢୋଲ ଭିତରେ ପଶି ଛଟା ଗାଜୁଛୁ ।"

ଏତକ କହି ସେ ଢୋଲଟିକୁ ଅଟକାଇ ଦେଲା । ଢୋଲ ଆଉ ଗଡ଼ି ପାରିଲା ନାହିଁ ।

ଭଲୁଆ ଢୋଲ ଉପରକୁ ଡେଇଁ ପଡ଼ିଲା । ଚମଡ଼ାକୁ ଟିକିଟିକି କରି କାଟି ପକାଇବାରୁ ମେଣ୍ଢାଛୁଆ ପଦାକୁ ବାହାରି ଆସିଲା । ମୁହୂର୍ତ୍ତେ ବି ଅପେକ୍ଷା ନକରି ତାକୁ ଠାକୁ ଠାକୁ କରି ଭଲୁଆ ଗିଳି ପକାଇଲା ।



# ଯୁବରାଜ ବୀରତୁଙ୍ଗ

ଏକଦା ଜଣେ ରାଜା ଥିଲେ । ସବୁଥିରେ ସେ ପରିପୂର୍ଣ୍ଣ । କିନ୍ତୁ ଗୋଟିଏ ବିଷୟରେ ସେ ଊଣା । ସେଇ ଊଣା ଟିକକ ହିଁ ଯଥେଷ୍ଟ । ସେଥିପାଇଁ ତାଙ୍କ ସୁଖ, ଦିବସ ପରି ଦୀର୍ଘ ଓ ଅବିଚ୍ଛିନ୍ନ ହୋଇ ପାରୁ ନ ଥିଲା ।

ତାଙ୍କର ଗୋଟିଏ ବୋଲି ରାଣୀ । ସେ ନିଃସନ୍ତାନ, ସେଇଠାହିଁ ତାଙ୍କର ଏକମାତ୍ର ଦୁଃଖ । ସେଥିପାଇଁ ରାଣୀ ସବୁବେଳେ ବିମର୍ଷ । ବିଷର୍ଣ୍ଣ । ବ୍ୟଥିତ ।

ଦିନେ ଜଣେ ଫକୀର ଉଆସକୁ ଆସିଲେ । ରାଣୀଙ୍କର ସବୁ ଧର୍ମରେ ବିଶ୍ବାସ । ତାଙ୍କ ଆଖିରେ ସବୁ ଧର୍ମଯାଜକ ସମ୍ମାନସ୍ପଦ । ରାଣୀ ଆସି ଫକୀରଙ୍କୁ ମୁଣ୍ଡିଆ ମାରିଲେ । ଫକୀର ଆଶୀର୍ବାଦ ଦେଲେ—"ଦିଗ୍‌ବିଜୟୀ ସନ୍ତାନର ଜନନୀ ହୁଅ ମା ।"

ଏ ଆଶୀର୍ବାଦରେ ରାଣୀ ମର୍ମାହତ । ଦୁଃଖିତ । ମନରେ ତାଙ୍କର ଅଶେଷ ଯନ୍ତ୍ରଣା । ସେ କଇଁ କଇଁ ହୋଇ କାନ୍ଦି ଉଠିଲେ । କୋହଭରା ଗଳାରେ କହିଲେ— "ମୁଁ ଏକ ଅଭାଗିନୀ । ଜନନୀ ହେବାର ସୌଭାଗ୍ୟ ମୋର ନାହିଁ । ଆପଣଙ୍କ ଆଶୀର୍ବାଦ ମୋ ପକ୍ଷେ ଏକ ତାଚ୍ଛଲ୍ୟ ।"

ଫକୀର ରାଣୀଙ୍କ କଥାରେ ବିସ୍ମିତ । ଅଧୈର୍ଯ୍ୟ । ଚିନ୍ତିତ । ସେ ରାଣୀଙ୍କୁ କିଛି ସମୟ ଚାହିଁ ରହିଲେ । ତାପରେ ତାଙ୍କ ମୁହଁରେ ଟିକିଏ ହସର ଆଭାସ । ସେ ମୁଣିରୁ କିଛି ଯବଧାନ ବାହାର କଲେ । ରାଣୀଙ୍କହାତକୁ ସେତକ ବଢ଼ାଇ ଦେଇ କହିଲେ—"ମା !

ଏଇ ଯବଧାନ ତକ ନଅ । ଏହାକୁ ଗିଳିଦିଅ । ନଅମାସ ପରେ ତମର ଦିବ୍ୟ ସୁନ୍ଦର ପୁତ୍ରଲାଭ ହେବ । ତମର ଆଉ ଦୁଃଖ ରହିବ ନାହିଁ ।

ରାଣୀଙ୍କ ଜୀବନରେ ଏ ଘଟଣା ନୂଆ ନୁହେଁ । ପୂର୍ବରୁ କେତେ ଯେ ସାଧୁ, ସନ୍ନ୍ୟାସୀ ଓ ଫକୀର ଆସିଛନ୍ତି ତାହା ଅକଳନୀୟ । ସମସ୍ତଙ୍କଠାରୁ ସେ ପାଇଛନ୍ତି ଆଶ୍ୱାସନା, ଜଡ଼ି, ବୁଟୀ । ସେ ସବୁ ତାଙ୍କ ପକ୍ଷେ ହୋଇଛି ନିରର୍ଥକ । ନିଷ୍ଫଳ । ତେବେ ବି ତାଙ୍କର ବିଶ୍ୱାସ ଅତୁଟ । ସେ ଆଉ ଡେରି କଲେ ନାହିଁ । ସାଙ୍ଗେ ସାଙ୍ଗେ ଯବଧାନଟକ ଗିଳି ଦେଲେ ।

ଏଥର ଫକୀରଙ୍କ କଥା ତ୍ରୁଟିହୀନ । ସତକୁ ସତ ନଅମାସ ପରେ ରାଣୀଙ୍କର ଦିବ୍ୟସୁନ୍ଦର ପୁଅଟିଏ ହେଲା ।

ପିଲାଟି ଦିନକୁ ଦିନ ଚନ୍ଦ୍ରକଳାପରି ବଢିବାକୁ ଲାଗିଲା । ସେ ଅତ୍ୟନ୍ତ ସାହସୀ । ବଳବାନ । ବିଚକ୍ଷଣ ତାର ବୁଦ୍ଧି । ପିଲାଟି ଦିନରୁ ଏହା ଜଣା ପଡୁଥିଲା । ରାଜା ବାଛି ବାଛି ନାଁ ରଖିଲେ ଖାରଭୁଙ୍ଗ ।

ଖାରଭୁଙ୍ଗ ଏବେ ଯୁବକ । ତାଙ୍କ ସମକକ୍ଷ ଯୋଦ୍ଧା କେହି ଆଉ ନାହାନ୍ତି । ଏଥିରେ ଦ୍ୱିମତ ହେବାର କିଛି ନାହିଁ । କିନ୍ତୁ ସେ ସବୁବେଳେ ଅସ୍ଥିର । ବାହାର ଦୁନିଆରେ ବୁଲିବାକୁ ତାଙ୍କର ଘୋର ଇଚ୍ଛା । ଦୁଃସାହାସିକ କାର୍ଯ୍ୟ କରିବାକୁ ତାଙ୍କର ପ୍ରବଳ ଆଗ୍ରହ ।

ରାଜାଙ୍କର ମତ କିନ୍ତୁ ଭିନ୍ନ । ସବୁବେଳେ ପୁଅକୁ ପାଖରେ ରଖିବାକୁ ସେ ଚାହାନ୍ତି । ବାପାଙ୍କର ମନକଥା ଯୁବରାଜଙ୍କୁ ଅଛପା ନଥିଲା । ସେ ବହୁତ ଅପେକ୍ଷା କଲେ, ତଥାପି ରାଜାଙ୍କର ମତ ଅପରିବର୍ତ୍ତିନୀୟ । ତେଣୁ ବାଧ୍ୟ ହୋଇ ଦିନେ ବାପାଙ୍କୁ ସେ ମନ କଥା କହିଲେ ।

ରାଜା ନରେନ୍ଦ୍ରବର୍ମା । ମୁଣ୍ଡ ହଲାଇ ଅସମ୍ମତି ଜଣାଇଲେ । ତା'ପରେ କହିଲେ "ପୁଅମାନଙ୍କ ଜୀବନ ମୂଲ୍ୟବାନ । ବିଦେଶରେ ବିପଦ ଅଛି । ସେମାନଙ୍କୁ ବିଦେଶ ପଠାଇ ବିପଦର ସମ୍ମୁଖୀନ ହେବାକୁ ଦିଆଯିବ ନାହିଁ ।"

ଏକଥା ଶୁଣି ଯୁବରାଜଙ୍କ ମନ ଭାରି କଷ୍ଟ । ସେ କାହାକୁ କିଛି କହିଲେ ନାହିଁ । ସେଇଦିନୁ ସବୁବେଳେ ସେ ଘରେ ଚୁପ୍ ହୋଇ ବସନ୍ତି । ଏମିତି କି ଖାଇବା ପିଇବାର ନାଁ ବି ଧରନ୍ତି ନାହିଁ । ଫଳରେ ଆଗ ସ୍ୱାସ୍ଥ୍ୟ ତାଙ୍କର ନାହିଁ । କଣ୍ଠା ଖାଲି ଦୋହଲୁଛି ।

ପୁଅର ଏ ଅବସ୍ଥା ଦେଖି ରାଜା ବିବ୍ରତ । ବ୍ୟସ୍ତ । ପୁଅକୁ ବୁଝାଇବାକୁ ଚେଷ୍ଟା କଲେ । ଫଳ କିଛି ହେଲା ନାହିଁ । ବାଧ ହୋଇ ପୁଅ କଥାରେ ରାଜି ହୋଇଗଲେ ।

ଯୁବରାଜ ଏଥର ଭାରି ଖୁସି । ରାଜ୍ୟରେ ତାଙ୍କର ତିନିଜଣ ବନ୍ଧୁ । ସମସ୍ତେ ଖୁବ୍ ସାହସୀ । ବୀର । ପ୍ରଥମ ଜଣକ ସାହାଣଦିଆ । ସେ ଖଣ୍ଡା ଓ ଛୁରି ପ୍ରଭୃତିଧାର କରେ । ଦ୍ୱିତୀୟ ଜଣକ କର୍ମକାର । ସେ ଖଣ୍ଡା ଓ ଛୁରି ଗଢ଼େ । ତୃତୀୟ ହେଉଛି ସୂତ୍ରଧର । କାଠ କାମ କରେ ।

ଭଲ ଦିନଟିଏ ଦେଖି ଯୁବରାଜ ତିନିବନ୍ଧୁଙ୍କୁ ଧରି ବିଦେଶ ବାହାରିଲେ । ସେମାନେ କେତେ ଜାଗା ବୁଲିବୁଲି ଗୋଟିଏ ସହରରେ ପହଞ୍ଚିଲେ । ସହରଟି ବେଶ୍ ସୁନ୍ଦର । ପରିଷ୍କାର । ପରିଚ୍ଛନ୍ନ । ରାସ୍ତାଗୁଡ଼ିକ ଖୁବ୍ ଚଉଡ଼ା । ଦୁଇ କଡ଼ରେ ଦୋକାନ । ବିକା ହେବା ପାଇଁ ଜିନିଷ ସବୁ ସୁନ୍ଦର ଭାବରେ ସଜା ହୋଇ ରହିଛି । କିନ୍ତୁ ଆଶ୍ଚର୍ଯ୍ୟ ! ବିରାଡ଼ି ପିଲାଟିଏ ବି ଦେଖିବାକୁ ମିଳିଲା ନାହିଁ । କିଛି ସମୟ ଧରି ବନ୍ଧୁମାନଙ୍କ ମଧ୍ୟରେ ଏ ବିଷୟରେ ଆଲୋଚନା ହେଲା । କିଛି ସିଦ୍ଧାନ୍ତରେ ସେମାନେ ଉପନୀତ ହୋଇପାରିଲେ ନାହିଁ ।

ସାହାଣଦଅା ବନ୍ଧୁଜଣକ ଶେଷକୁ ମୁଣ୍ଡରେ ହାତ ବାଉଁଉ ବାଉଁଉ କହିଲେ "ଏଇମିତ ଗୋଟେ ସହର ବିଷୟରେ ମୁଁ କିଛି ଶୁଣିଛି । ସେଠି ଜଣେ ଅସୁରର ଆବିର୍ଭାବ ହୋଇ ସହରଟାକୁ ଛାରଖାର କରିଦେଲା । ଖବର ଧରି ଲୋକମାନେ ବିଦେଶକୁ ପଳାଇଲେ । ଯେଉଁଠି ଯାହା ଥିଲା, ସବୁ ସେମିତି ପଡ଼ି ରହିଲା । ମୁଁ ଭାବୁଛି, ଏଇଟା ସମ୍ଭବ ସେଇ ସହର । ଏଠି ଦଣ୍ଡେ ରହିବା ଅନୁଚିତ । ଚାଲ, ଆମେ ଶୀଘ୍ର ଏଠୁ ପଳାଇବା ।"

ଏ କଥାଟା ବନ୍ଧୁ ସୂତ୍ରଧର ଓ କର୍ମକାରମାନଙ୍କ ମନକୁ ବେଶ୍ ପାଇଲା । ସେମାନେ ସାହାଣଦଅା ପ୍ରସ୍ତାବକୁ ସମର୍ଥନ କଲେ । କିନ୍ତୁ ରାଜପୁଅ ଏଥିରେ ଏକମତ ହୋଇ ପାରିଲେ ନାହିଁ । ସେ ତ ଧୂର୍ତ୍ତ । ସିଧା ମନା କରି ବନ୍ଧୁମାନଙ୍କ ମନରେ କଷ୍ଟ ଦେବାକୁ ସେ ଅନିଚ୍ଛୁକ । ତେଣୁ କଥାଟାକୁ ବାଆଁରେଇ ଦେଇ ସେ କହିଲେ—"ମୋତେ ଭାରି ଭୋକ । ମଧ୍ୟାହ୍ନ ଭୋଜନ ନ ସାରିବା ପର୍ଯ୍ୟନ୍ତ ମୁଁ କୁଆଡେ ଯାଇପାରିବ ନାହିଁ ।"

ସହର ତ ଲୋକ ଶୂନ୍ୟ । ତେଣୁ ରନ୍ଧା ଖାଦ୍ୟ ମିଳିବା ସ୍ୱପ୍ନ । ନ ରାନ୍ଧିଲେ ନ ଚଳେ । ତେଣୁ ବାଧ ହୋଇ ସାଙ୍ଗମାନେ ରାନ୍ଧିବା ପାଇଁ ସ୍ଥିର କଲେ । ରନ୍ଧା ସାମଗ୍ରୀ ଯାହା ଦରକାର, ପାଖ ଦୋକାନରୁ ନେଇ ଆସିଲେ । କିନ୍ତୁ ଉଚିତ ଦର ଦୋକାନରେ ରଖିଦେଲେ ।

ନିକଟରେ ରାଜପ୍ରାସାଦ । ତାର ରୋଷେଇଶାଳଟି ପରିଷ୍କାର ଓ ପରିଚ୍ଛନ୍ନ । ରାନ୍ଧିବାର ଉପକରଣ ସଜ୍ଜା ହୋଇ ରହିଛି । ସେଇଠାରେ ରାନ୍ଧିବାକୁ ସ୍ଥିର ହେଲା । ରାନ୍ଧିବାର ଦାୟିତ୍ୱରେ ନେଲା ସାହାଣଦାର ଅନ୍ୟ ତିନିବନ୍ଧୁଙ୍କର ସେଠି କିଛି କରିବାର ନ ଥିଲା । ତେଣୁ ସେମାନେ ସହର ବୁଲି ବାହାରିଲେ ।

ସାହାଣଢଆ ଭଲ ଗୁଣେ । ରନ୍ଧା ତା'ର ସଉକ । ରନ୍ଧା ଖାଦ୍ୟର ବାସ୍ନାରେ ଘର ବାହାର ମହକୁଥାଏ । ସାହାଣଢଆର ତ ଆଉ କିଛି କାମ ନଥିଲା । ସେ ତାର ବନ୍ଧୁମାନଙ୍କୁ ଅପେକ୍ଷା କରିଥାଏ । ହଠାତ୍ ସେ ଦେଖିଲା, ଘର କଣରେ ଖୁବ୍ ବଡ଼ ମୂଷାଟିଏ ସେ ଘୋଡ଼ାସାଜ ପିନ୍ଧିଛି । ତା ଉପରେ ଯୁଦ୍ଧ ପୋଷାକ ପରିହିତ ଗ୍ରେଟ ମଣିଷଟିଏ । ଅଣ୍ଟାରେ ତାର ଖଣ୍ଡା । ହାତରେ ବର୍ଚ୍ଛା । ଗ୍ରେଟ ମଣିଷଟି ରାଗରେ ତମତମ । ସେ ସାହାଣଢଆକୁ ଆଦେଶ ଦେଲା "ରନ୍ଧା ତ ସରିଛି । ଯାହା ସବୁ ରାନ୍ଧିଛୁ, ମୋ ପାଇଁ ବାଢି ଦେ । ମୁଁ ତାକୁ ଖାଇବ ।"

ମୂଷା ଉପରେ ଗ୍ରେଟ ମଣିଷ । ତାହା ଦେଖି ସାହାଣଢଆ ମୁହଁରେ ବିଦ୍ରୂପର ହସ । ଥଟ୍ଟାରେ ସେ କହିଲା—"ଓଃ ସବୁତକ ତୋତେ ଖାଇବାକୁ ବାଢ଼ିଦେବି ? ପାଟିରେ ଲାଗିଯିବ ନ ।"

"ସେ ସବୁ ବାଜେ କଥା । ତାହା ଶୁଣିବାକୁ ମୋର ବେଳ ନାହିଁ । ଶୀଘ୍ର ଖାଇବାକୁ ଦେ । ନ ହେଲେ ପାଖ ଅଶ୍ୱତ୍ଥ ଗଛର ଅଗରେ ତୋତେ ବାନ୍ଧି ଝୁଲାଇ ଦେବି !" ଗ୍ରେଟ ମଣିଷଟି ଗର୍ଜି ଉଠିଲା ।

ଗ୍ରେଟ ମୁହଁରେ ବଡ଼ କଥା । ପୁଣି ତାର ଖୁବ୍ ଅସ୍ପର୍ଦ୍ଧା । ଏସବୁ ଦେଖି ସାହାଣଢଆ ରାଗିଗଲା । ସେ ବଡ଼ ପାଟିରେ କହିଲା "ଖୁବ୍ ତ ବଡ଼ ବଡ଼ କଥା କହୁଛୁ । ଆଇଲୁ ! ଟିକିଏ ପାଖକୁ ଆଇଲୁ । ମୁଁ ମୋର ବୁଢ଼ା ଓ ମଝି ଆଙ୍ଗୁଠି ଭିତରେ ତୋତେ ଚିପି ଚେପା କରିଦିଏ ।"

ଆଖି ପିଛୁଳାକେ ସାହାଣଢଆ ଦେଖିଲା, ଗ୍ରେଟ ମଣିଷଟି ସେଠି ନାହିଁ । ତା ଜାଗାରେ ଗୋଟିଏ ବିରାଟ ଅସୁର । ତାକୁ ଦେଖି

ସାହାଣଦିଆ ଗୁନିଆ । ତା’ର ପିଳେଇପାଣି । ସେ ଭୟରେ ବରଡ଼ାପତ୍ରପରି ଥରିବାକୁ ଲାଗିଲା । ସେ ଯେଉଁଠି ଠିଆ ହୋଇଥିଲା, ସେଇଠି ଆଣ୍ଠୁ ପକେଇ ବସି ପଡ଼ିଲା । ଯାଚି ତାର ଜନ ମାଗିଯାଉ-ଥାଏ । ସେଇଥିରେ ସେ କ୍ଷମା ମାଗିଲା । ତାର ଜୀବନରକ୍ଷା ପାଇଁ ନିବେଦନ କଲା ।

ସାହାଣଦିଆର ନିବେଦନ ଅତ୍ୟନ୍ତ କରୁଣ । ପାଷାଣ ବି ତରଳି ଯାଇଥାଆନ୍ତା । କିନ୍ତୁ ଅସୁର ନିର୍ଦ୍ଦୟ । ନିଷ୍ଠୁର । ଅବିଚଳିତ । ସାହାଣଦିଆକୁ ଶୂନ୍ୟେ ଶୂନ୍ୟେ ଟେକି ନେଇଗଲା—ସେତିକି, ସେ ଏକ ପିଲାଙ୍କ ଖେଳନା । ତାକୁ ନେଇ ପାଖ ଅଶ୍ୱତ୍ଥ ଗଛ ଆଗରେ ବାନ୍ଧି ଦେଲା । ତାପରେ ସେ କୁଆଡ଼େ ଗଲା, ଜାଣି ହେଲା ନାହିଁ ।

ଏ ସବୁ ନିମିଷକର ଘଟଣା । ସାହାଣ ଦିଆ ଏମିତି ଡ଼ରିଯାଇ ଥିଲା ଯେ, କ’ଣ ହେଉଛି ସେ କିଛି ଠଉରେଇ ପାରିଲା ନାହିଁ । ପ୍ରକୃତିସ୍ଥ ହେବାକୁ ତାକୁ ସମୟ ଲାଗିଲା । ସେତେବେଳକୁ ସେ ଅଶ୍ୱତ୍ଥ ଗଛର ଡ଼ାଳରେ ଝୁଲୁଥିଲା ।

ତାର ଅବସ୍ଥା ଅତ୍ୟନ୍ତ ଦୟନୀୟ, ଲଜ୍ଜାକର ଆଉ ହାସ୍ୟାସ୍ପଦ ବି । ସେଥିପାଇଁ ସେ ଖୁବ୍ ଦୁଃଖିତ । ତାର ଭୟ—ସାଙ୍ଗମାନେ ଏଇନେ ଆସିଯିବେ । ତାକୁ ଏ ଅବସ୍ଥାରେ ଦେଖି ବ୍ୟସ୍ତ ହେବେ । ପ୍ରକୃତ ଘଟଣା ଜାଣିବେ । ତାକୁ ଭୀରୁ କାପୁରୁଷ ବୋଲି ଭାବିବେ । ସେ ଯେ ଯୁଦ୍ଧ ନ କରି ଆତ୍ମସମର୍ପଣ କରିଛି, ସେଥିପାଇଁ ସେ ହେବ ଘୃଣାର ପାତ୍ର । ଏପରି ଲଜ୍ଜାକର ମୁହଁ ଦେଖାଇବା ଅପେକ୍ଷା ମୃତ୍ୟୁ ବରଂ ଶ୍ରେୟସ୍କର । ତେଣୁ ମୁକ୍ତି ହେବା ପାଇଁ ତାର ଆପ୍ରାଣ ଚେଷ୍ଟା ଫଳରେ ବନ୍ଧା ହୋଇଥିବା ଡ଼ାଳଟି ଭାଙ୍ଗିଗଲା । ସେ ଆସି

ଚଳେ ବଲ୍‌ଲଭା ଡ଼ାକ୍ତରେ ସେ ବାଡ଼େଇ ହୋଇ ଆସିଥିବାରୁ ତା ଦେହର ଠାଏ ଠାଏ ଅଙ୍କୁଡ଼ା ଚିହ୍ନ ଥାଏ । କେବଳ ସେତିକି । ବଡ଼ ଧରଣର ଆଘାତ ସେ କିଛି ପାଇ ନାହିଁ ।

ସେ ତଳୁ ଉଠି ଧାଇଁଲା ରାଜପ୍ରାସାଦକୁ । ସେଠି ଶୋଇବା ଘର ସବୁ ମଧ୍ୟ ସୁସଜ୍ଜିତ । ସେ ଟୋଟିଏ ବିଛଣାରେ ଶୋଇପଡ଼ି ଶେଯଟିକୁ ତା ଉପରକୁ ଟାଣି ନେଲା । କମ୍ପ ଜ୍ୱର ହେଲେ ମଣିଷ ଯେମିତି ଥରେ, ଶେଯ ଭିତରେ ସେମିତି ସେ ଥରୁଥାଏ ।

କିଛି ସମୟ ପରେ ସାରଭୁଙ୍ଗ ଓ ତାଭ ଦୁଇବନ୍ଧୁ ଫେରିଲେ । ସେତେବେଳକୁ ସେମାନଙ୍କ ସାଙ୍ଗ ଲୋକ କଲା ଶିକାରରୁ ଫେରିଥିବା ଶିକାରୀମାନଙ୍କ ପରି । ଘରେ ପଶୁ ପଶୁ ସେମାନେ ଡ଼ାକପକାଇଲେ —"ହେ ସାହାଣବଧ୍ୟା ବନ୍ଧୁ, ରନ୍ଧା ତ ସରିବଣି । ଶୀଘ୍ର ଖାଇବାକୁ ବାଢ ।"

ଶେଯ ଭିତରୁ ସାହାଣବଧ୍ୟା ପାଟି କରି କହିଲା "ଝୁରା ନାହିଁ । ମୁଁ ରନ୍ଧା ସାରିଲା ବେଳକୁ ମତେ କମ୍ପ ଆସିଲା । ମୁଁ ବସି ରନ୍ଧା ପାରିଲି ନାହିଁ । ଏଠାକୁ ଆସି ଶେଯ ଘୋଡ଼ି ହୋଇ ଶୋଇଲି । ଏଇ ଅବସ୍ଥାରେ କୁକୁରଟିଏ ଲଗଖାଇ ଘରେ ପଶି ସବୁ ରନ୍ଧା ଜିନଷ ଖାଇ ଚାଲିଯାଇଛି । ଅବିଶ୍ୱାସ ହେଲେ ଦେଖ, ହାଣ୍ଡି ସବୁ ଗଡ଼ୁଛି ।" ସତ କହିବାକୁ ତାର ସାହସ ପଡ଼ାଇଲା ନାହିଁ ।

ଯୁବରାଜ ସୋଷେଇ ଘରେ ପଶି ହାଣ୍ଡିମାନଙ୍କ ଅବସ୍ଥା ଦେଖିଲେ । ଟିକିଏ ହେଲେ ରାଗିଲେ ନାହିଁ । ବରଂ କହିଲେ— "ଏହା ବଡ଼ ଦୁଃଖର କଥା । ରନ୍ଧା ହେଲେବି ଆମକୁ ଖାଇବାକୁ ମିଳିଲା ନାହିଁ । ଯାହା ହେଉ, ପଛ କଥା ଭାବି ଆଉ ଲାଭ ନାହିଁ ।

ଆମ ପାଇଁ ପୁଣି ଖାଦ୍ୟ ପ୍ରସ୍ତୁତ କରିବାକୁ ହେବ । କମାର ବନ୍ଧୁ ଏହାର ଦାୟିତ୍ୱ ନଅନ୍ତୁ । ମୁଁ ଆଉ ବଡ଼େଇ ବନ୍ଧୁ ସହରର ଅନ୍ୟ ଅଂଶ ବୁଲିଆସୁ ।"

କମାର ବନ୍ଧୁଟି ରାନ୍ଧ ସାରିଲା ବେଳକୁ ମୂଷା ପିଠିରେ ଗୋଟ ମଣିଷଟିଏ ଆସି ହାଜର । ସାହାଣବଅାକୁ ସେ ଯାହା କହୁଥିଲା, ଅବିକଳ ସେଇଆ କମାରକୁ କହିଲା । ସାହାଣବଅା ଯାହା କହୁଥିଲା ଓ କରୁଥିଲା, କମାରଟି ଅବିକଳ ସେଇଆ କହିଲା ଓ କଲା । ଅସୁର ସାହାଣବଅା ପରି କମାରକୁ ନେଇ ପାଖ ଅଶ୍ୱତ୍ଥ ଗଛ ଡାଳରେ ବାନ୍ଧି ଦେଲା । ସେ ସାହାଣବଅା ପରି ଛାଟିପିଟି ହେବାବେଳେ ଡାଳଟି ଭାଙ୍ଗିଗଲା । କମାରଟି ଛଉନ୍ଧ ଡାଳରେ ବାଡ଼େଇ ହୋଇ ତଳେ ପଡ଼ିଗଲା । ତା ଦେହରେ ବ କଛୁ ଆଞ୍ଚୁଡ଼ା ଚହ୍ନ ଛଡ଼ା ଆଉ ବଡ଼ ଧରଣର ଆଘାତ ଲାଗି ନ ଥିଲା । ତତ୍କ୍ଷଣାତ ଉଠି ସେ ପ୍ରାସାଦ ଆଡ଼କୁ ଦୌଡ଼ିଲା । ସେଠି ଶୟନ କକ୍ଷର ଗୋଟିଏ ବିଛଣାରେ ରେଙ୍କେଇ ଘୋଡ଼ି ହୋଇ ଶୋଇ ପଡ଼ିଲା ।

ରାଜପୁତ୍ର ଓ ବଡ଼େଇ ଫେରିଲେ । କମାରକୁ ଡାକିବାରେ ସେ ସାହାଣବଅା ପରି କହିଲା ଯେ ରନ୍ଧା ସରିବା ପରେ ତାକୁ କମ୍ପ ଆସିଲା । ସେ ଆସିଲା ଶୋଇବାକୁ । କୁକୁର ପଶି ସବୁ ରନ୍ଧା ଖାଦ୍ୟ ଖାଇ ଦେଇଛି ।

ରାଜପୁତ୍ର ଏଥର ଧିର ଶାନ୍ତ । ହେଲେ ପ୍ରବଳ ହେଲେ ବି ସେ ଅବିଚଳିତ । ବଡ଼େଇ ବନ୍ଧୁକୁ ରାନ୍ଧିବା ଦାୟିତ୍ୱ ଦେଇ ସେ ବୁଲିବାକୁ ବାହାରିଗଲେ ।

ରନ୍ଧା ସରେ ହାଣ୍ଡିଆ ଓ କମାରର ବଣା ବଡେଇକୁ ଢ଼ ପଡ଼ିଲା । ସେ ବ ଯାଇ ଗୋଟିଏ ବଛଣାରେ ଶେଯ ଢ଼ୋଡ଼ହୋଇ ଶୋଇଲେ । ରାଜପୁତ୍ର ଅସିବାରେ ତାର କୈଫିୟତ ତାଇ ବନ୍ଧୁମାନଙ୍କଠାରୁ ଭିନ୍ନ ନୁହେଁ । ରାଜପୁତ୍ର ସବୁ ଶୁଣିଲେ । କିଛି କହିଲେ ନାହିଁ । ନିଜେ ରାନ୍ଧ ବସିଲେ ।

ରନ୍ଧା ସରିଲା । ବସ୍ଥାରେ ଘର ମନ୍ଦ ମନ୍ଦ ବାସୁଥାଏ । ରାଜପୁତ୍ର ସେତେବେଳେ ଘରୁ ପଦାକୁ ଆସୁଆସୁ ଦେଖିଲେ, ଘର କଣରେ ଘୋଡ଼ା ସାଜରେ ସଜ୍ଜିତ ମୂଷା ଉପରେ ଯୁଦ୍ଧ ପୋଷାକ ପିନ୍ଧା ଗ୍ରେଟ ମଣିଷଟିଏ । ଅଣ୍ଟାରେ ଖଣ୍ଡା । ହାତରେ ବର୍ଚ୍ଛା ।

ଗ୍ରେଟ ମଣିଷଟିକୁ ଦେଖି ରାଜପୁତ୍ରଙ୍କର ଦୟା ଆସିଲା । ସେ ସ୍ନେହଭରା କଣ୍ଠରେ କହିଲେ—"ସତ କହୁଛି । ତୁମେ ଖୁବ ସୁନ୍ଦର । ତମର କ'ଣ ଦରକାର କୁହ ?"

ଗ୍ରେଟ ମଣିଷଟି ଚିତ୍କାର କଲା—"ଯାହା ରନ୍ଧା ହୋଇଛି ସବୁ ବାଢ଼ । ମୁଁ ଖାଇବ ।"

ଏ କଥାରେ ରାଜପୁତ୍ର ରାଗିଲେ ନାହିଁ । ବରଂ ଧୀର ସ୍ଥିର ଭାବରେ କହିଲେ—"ଆମ ସାତଜଣ ପାଇଁ ରନ୍ଧା ହୋଇଛି । ତୁମେ ଆଉ ଜଣେ । ଯାହା ଅଛି; ସମସ୍ତେ ମିଶି ବାଣ୍ଟିକୁଣ୍ଟି ଖାଇବା । ତୁମେ ଅଧିକ ହେଲେ କପରି ହେବ । ତମକୁ ସବୁଯାକ ଖାଇବାକୁ ଦେଇ ହେବ ନାହିଁ ।"

ଗ୍ରେଟ ମଣିଷଟି ଉତ୍ତ୍ୟକ୍ତ । କଣ୍ଠରେ ଅସନ୍ତୁଷ୍ଟତା । ସେ କହିଲା—ଅସମ୍ଭବ । ମୁଁ ସେ ରନ୍ଧା ଖାଦ୍ୟରେ କାହାକୁ ଅଂଶୀଦାର କରିବାକୁ ଚାହେଁ ନାହିଁ । ଶୀଘ୍ର ବାଢ଼ । ମୁଁ ଖାଇବ । ନହେଲେ ଫଳ ଖରାପ ହେବ ।"

ରାଜପୁତ୍ର ଆଶ୍ଚର୍ଯ୍ୟ । ଏକଟେ ବୋଲ ମଣିଷ । ତାଙ୍କୁ ପୁଣି ଧମକାଉଛି । ତଥାପି ସେ ଲେଶମାତ୍ର ବିରକ୍ତ ହେଲେ ନାହିଁ । ବରଂ କହିଲେ—"ବିଷମୟ ଫଳ ପାଇଁ ମୁଁ ପ୍ରସ୍ତୁତ । ଯୁଦ୍ଧ କରିବାକୁ ହେଲେ ବି ମୁଁ ରାଜି ।"

ଯୁବରାଜଙ୍କ ପାଟିରୁ କଥା ସରିନାହିଁ । ଟିକ ମଣିଷଟି ରୂପ ବଦଳାଇ ବିରାଟକାୟ ଅସୁର ପାଲଟିଗଲା । ତାକୁ ଦେଖି ରାଜପୁତ୍ର ଆଶ୍ଚର୍ଯ୍ୟ ମାତ୍ର ଭୟ ପାଇଲେ ନାହିଁ । ଖୁବ୍ ଜୋରରେ ସେ ହସି ହସି ଦେଦମ୍ । ଟିକଏ ଦମ୍ ନେଇ କହିଲେ "ସବୁ ଜନଷର ମାଧମ ଅଛି । ତାକୁ ନେଇ ସେ ପରିଚିତ । ଏଇନେ ତମେ ଅସମ୍ଭବ ରକମର ଶ୍ରେଷ୍ଠ ଥିଲ । ଆଖି ପିଛୁଳାକେ ବଡ଼ ଥିବାଇଯାଇଛ । ତା ପୁଣି କଳ୍ପନାତୀତ । ତୁମେ ବିନା କଷ୍ଟରେ ତୁମର ଆକାର ବଦଳାଇ ପାରୁଛ । ତାହା ଖାଲି ଖୁସିର କଥା । ତୁମେ ଯଦି ଇଛା କର ଠିକ୍ ମୋ ଭଳି ହୋଇପାରନ୍ତ, ବଡ଼ ନୁହେଁ କି ଶ୍ରେଷ୍ଠ ନୁହଁ, ଛୋଟହେଲେ, କାହା ପାଇଁ ରକ୍ଷା ହୋଇଛି, ଆମେ ସ୍ଥିର କରି ପାରନ୍ତେ ।

ଅସୁରଟି ରାଜପୁତ୍ରଙ୍କ ବ୍ୟବହାରରେ ସନ୍ତୁଷ୍ଟ । ତାର ଯୁକ୍ତିଯୁକ୍ତ କଥାରେ ସେ ମୁଗ୍ଧ । ସେ ତା'ର ନିଜ ରୂପ ବଦଳାଇ ଦେଲା । ଏବେ ସେ ଜଣେ ସାଧାରଣ ମଣିଷ ।

ବୀରଭଦ୍ରଙ୍କ ଆହ୍ୱାନରେ ଯୁଦ୍ଧ ଆରମ୍ଭ ହେଲା । ଅସୁରଟି ଖୁବ୍ ଯୋଦ୍ଧା । ରାଜପୁତ୍ର ମଧ୍ୟ କୌଣସି ଗୁଣରେ କମ୍ ନୁହନ୍ତି । ବହୁ ସମୟ ଧରି ଯୁଦ୍ଧ ଚାଲିଲା । ରାଜପୁତ୍ରଙ୍କୁ ସେ କୌଣସି ଉପାୟରେ ପରାସ୍ତ କରି ପାରିଲା ନାହିଁ । ଶେଷରେ ରାଜପୁତ୍ରଙ୍କ

ତୀକ୍ଷ୍ଣ ଖଣ୍ଡାର ଆଘାତରେ ଅସୁରର ମୁଣ୍ଡ ଗଣ୍ଡିରୁ ଅଲଗା ହୋଇଗଲା ।

ଏତେ ବଡ଼ ଘଟଣା ଘଟିଗଲା । କିନ୍ତୁ ତିନି ବନ୍ଧୁ ଯାକ ଉପରେ ଶେଯ ଭିତରେ ସେମିତି ପଡ଼ିଥାଆନ୍ତି । ବିଛଣା ଛାଡ଼ି ପଦାକୁ ଟିକିଏ ବି ଆସିଲେ ନାହିଁ ।

ବନ୍ଧୁମାନଙ୍କର ଅସୁସ୍ଥତାର କାରଣ ରାଜପୁତ୍ରଙ୍କୁ ଜାଣିବାକୁ ଆଉ ବାକି ନଥିଲା । ସେ ସେମାନଙ୍କୁ ଉଠାଇ ହସି ହସି କହିଲେ —"ବୀରଗଣ ତମର କମ୍ପଜରକୁ ମୁଁ ଧ୍ୱଂସ କରି ଦେଇଛି । ଏଥର ଉଠ ଝାଳିବା ହେଉ ।"

ସେମାନେ ବିଛଣାରୁ ଉଠି ପଦାକୁ ଆସିଲେ । ଯାହା ଦେଖିଲେ, ପ୍ରଥମେ ତାଙ୍କ ଆଖିକୁ ସେମାନେ ବିଶ୍ବାସ କରିପାରିଲେ ନାହିଁ । ରାଜପୁତ୍ରଙ୍କ ଅତୁଳନୀୟ ବୀରତ୍ବରେ ସେମାନେ ମୁଗ୍ଧ । ସ୍ତମ୍ଭୀଭୂତ । ତାଙ୍କ ଗୋଡ଼ତଳେ ପଡ଼ି ପ୍ରଶସ୍ତି ଗାଇଲେ ।

ଏଥର ସହର ଛାଡ଼ି ଯିବାର ଆଉ କୌଣସି କାରଣ ନଥିଲା । ଚାରିବନ୍ଧୁ ଯାକ ସେଠାରେ ରହିଲେ । ସହର ଛାଡ଼ି ପଳାଇଥିବା ଲୋକମାନଙ୍କ ନିକଟକୁ ବୀରଭୁଇଁ ଖବର ପଠେଇଲେ । ଅସୁର ମରିଥିବା ଖବର ଏହା ଭିତରେ ବ୍ୟାପ୍ତ ହୋଇଯାଇଥାଏ । ଲୋକମାନେ ପୁଣି ତାଙ୍କ ଘରକୁ ଫେରିଲେ । ଚାରିଆଡ଼େ ଏବେ ଜନଗହଳ । ସବୁଠାରେ ରାଜପୁଅ ବୀରଭୁଇଁଙ୍କ ପ୍ରଶଂସା ।

ବୀରଭୁଇଁ ଲୋକମାନଙ୍କୁ ପରିଷ୍କାର ଭାବରେ କହିଦେଲେ ଯେ ସେମାନେ ଏଠାରେ ନିର୍ଭୟରେ ବାସ କରିବାରେ ଅସୁବିଧା ଆଉ କିଛି ନାହିଁ । କିନ୍ତୁ ସେ ନିଜେ ଅସୁରକୁ ମାରିଛନ୍ତି । ତେଣୁ ରାଜ୍ୟ

ତାଙ୍କର । ସେଥିପାଇଁ, ସାହାଣଢଆକୁ ରାଜା ବୋଲି ସ୍ୱୀକାର କରିବାକୁ ହେବ । ତାପରେ ସେମାନେ ଯୋଗାଡ଼ କରି ଗୋଟିଏ ସୁନ୍ଦରୀ ଝିଅକୁ ଆଣିଲେ, ତା ସହିତ ସାହାଣଢଆର ବିବାହ ହେବ ।

ଲୋକମାନେ ଯୁବରାଜଙ୍କ ପ୍ରତି କୃତଜ୍ଞ । ବିନା ଦ୍ୱିଧାରେ ସେମାନେ ଏଥର ରାଜପୁତ୍ରଙ୍କ କଥାରେ ରାଜି । ସୁନ୍ଦରୀ ଝିଅଟିଏ ମିଳିବାରେ ଅସୁବିଧା କିଛି ହେଲା ନାହିଁ । ବିବାହ ସରିଲା । ସାହାଣଢଆର ଅଭିଷେକ ହେଲା । ସେ ଏଥର ରାଜା । ଦେଶ ଶାସନ କଲେଣି । ତାପରେ କମାର ଓ ବଢ଼େଇବନ୍ଧୁଙ୍କୁ ଧରି ରାଜପୁତ୍ର ତାଙ୍କର ପୁରୁଣା ଅଭିଯାନରେ ବାହାରିଲେ ।

ବିଦାୟ ବେଳ । ସାହାଣଢଆ ଖାରଭୁଙ୍ଗଙ୍କୁ ସେମାନଙ୍କ ସାଙ୍ଗରେ ନେବାକୁ ନିବେଦନ କଲା । ତାର ଅନୁରୋଧକୁ ରାଜପୁତ୍ର ତ ଖାଲି ପ୍ରତ୍ୟାଖାନ କଲେ ନାହିଁ । ସେଠାରେ ରହି ରାଜ୍ୟ ଶାସନ କରିବାକୁ ନିର୍ଦ୍ଦେଶ ଦେଲେ । ଗଲାବେଳେ କେତୋଟି ଯବଧାନଗଛ ଉପହାର ଦେଇ ଯୁବରାଜ କହିଲେ—"ଏସବୁ ମୋର ପ୍ରାଣ । ଏହାକୁ ତୁମେ ଯତ୍ନରେ ରଖିଥିବ । ଏହା ସତେଜ ଆଉ ସବୁଜ ଥିଲେ ମୁଁ ସୁଖରେ ଓ ନିରାପଦରେ ଅଛି ବୋଲି ଜାଣିବ । ମୋତେ ବିପଦ ପଡ଼ିଲେ, ଏହା ଝାଉଁଳି ପଡ଼ିବ । ସେତେବେଳେ ମୋର ସାହାଯ୍ୟ ଦରକାର । ଇଚ୍ଛା ହେଲେ, ମୋ ପାଖରେ ତୁରନ୍ତ ପହଞ୍ଚିବ ।"

ସାହାଣଢଆ ରାଜା ଓ ତାର ରାଣୀ ଯବଧାନ ଗଛ ଗୁଡ଼ିକକୁ ଧରି ରହିଲେ । ରାଜପୁତ୍ର କମାର ଓ ବଢ଼େଇକୁ ସାଙ୍ଗରେ ଧରି ଯାତ୍ରା ଆରମ୍ଭ କଲେ ।

ସେମାନେ ବହୁ ଦେଶ ବୁଲି ବୁଲି ପୁଣି ଏକ ପରିତ୍ୟକ୍ତ ସହରରେ ପହଞ୍ଚିଲେ । ସେଠାର ରାଜପ୍ରାସାଦ ବିରାଟ । ସୁନ୍ଦରବ । ରାଜପଥ ପ୍ରଶସ୍ତ । ଦୋକାନ ବଜାର ସୁସଜ୍ଜିତ । ଚାରିଆଡ଼େ ସୁନ୍ଦର ଘର । ପରିଷ୍କାର ପରିଚ୍ଛନ୍ନ । ସବୁ ଲୋଭନୀୟ । ଉପଭୋଗ୍ୟ । ଏହା ଜନଶୂନ୍ୟ । ସେମାନେ ଏସବୁ ଦେଖି ବ୍ୟସ୍ତବ୍ୟସ୍ତ ହୋଇ ପଡ଼ିଲେ । କମାରବନ୍ଧୁ କହିଲା—"ମୁଁ ଏ ସହର ବିଷୟରେ ଆଗରୁ ଜାଣିଛି । ଏଠି ଗୋଟେ ଭୂତ ବହୁତ ମଣିଷଙ୍କୁ ଖାଇ ଦେଲା । ଅନ୍ୟମାନଙ୍କୁ ଖୁବ୍ ହଇରାଣ ହରକତ କଲା । ତା ଭୟରେ ଲୋକମାନେ ସହର ଛାଡ଼ି ପଳାଇଗଲେ । ଏହା ଏକ ବିପଦଗ୍ରସ୍ତ ସ୍ଥାନ । ଚାଲ ଏଠୁ ପଳାଇବା ।"

ରାଜପୁତ୍ର କହିଲା—"ଆମେ କ୍ଳାନ୍ତ । ଅବସନ୍ନ । କ୍ଷୁଧାର୍ତ୍ତ । ରନ୍ଧାବଢ଼ା କରି ଖାଇସାରି ଏଠୁ ଚାଲିଯିବା ।"

ତାଙ୍କ କଥା ବନ୍ଧୁମାନେ ତ ମୁଣ୍ଡାଇଥାନ୍ତି । ସେମାନେ ଆଉ ହେଳା କଲେନାହିଁ । ପାଖ ଦୋକାନରୁ ରନ୍ଧାପାଇଁ ସରଞ୍ଜାମ ସଂଗ୍ରହ କଲେ । ତାର ଉଚିତ ମୂଲ୍ୟ ସେଠି ରଖିଦେଲେ । ପାଖରେ ଝୁଆସ । ତାର ରନ୍ଧନଶାଳା ପରିଷ୍କାର । କମାରବନ୍ଧୁ ରାନ୍ଧିବା ଦାୟିତ୍ୱ ନେଲେ । ଅନ୍ୟବନ୍ଧୁ ଦୁହିଁଙ୍କର କାମ ତ ନାହିଁ । ସେମାନେ ସହର ଭିତରକୁ ଦେଖିବାକୁ ଚାଲିଗଲେ ।

ରନ୍ଧା ଯେମିତି ସରିଛି, ବୁଢ଼ୀ ବେଶରେ ଭୂତଟି ଆସିଲା । ଦେଖିବାକୁ ସେ ଭୟଙ୍କର । ପଛେଇ ପଛେଇ ସେ ଚାଲୁଥାଏ । ତାକୁ ଦେଖି କମାରଟି ଛାନିଆ । ସେଠୁ ପଳାଇଗଲା । ତା ସାଥିରେ କଥାବାର୍ତ୍ତା କରିବାକୁ ବି ହେଲା ନାହିଁ । ପାଖ ଘରେ ପଶି ଭିତରୁ

କବାଟ ବନ୍ଦ କରିଦେଲା । ରନ୍ଧା ହୋଇଥିବା ସମସ୍ତ ଖାଦ୍ୟକୁ ଖାଇ ଭୂତଟି ଉଭେଇ ଗଲା ।

ଶେଷରେ ଆଉଟୁପାଉଟୁ ହୋଇ ରାଜପୁତ୍ର ଓ ବଢ଼େଇ ବନ୍ଧୁ ଫେରିଲେ । ସେମାନେ କମାର ବନ୍ଧୁକୁ ପାଇଲେ ନାହିଁ । ଶେଷରେ ଘରେ ରନ୍ଧା ହୋଇଥିବା ଖାଦ୍ୟ ମଧ୍ୟ କିଛି ନ ଥିଲା । ରାଜପୁତ୍ର ବ୍ୟସ୍ତ ହେଲେ ନାହିଁ । ବଢ଼େଇ ବନ୍ଧୁକୁ ରାନ୍ଧିବାର ଦାୟିତ୍ୱ ଦେଲେ । ସହରର ଅବଶିଷ୍ଟାଂଶ ଦେଖିବାକୁ ଚାଲିଗଲେ । ତାପରେ ବଢ଼େଇଟି ରନ୍ଧା ବଢା ସାରିଲା । ଯେତିକି ବେଳକୁ ଭୂତ ଆସି ହାଜର । ଭୂତକୁ ଦେଖି ବଢ଼େଇଟି ଗୁନିଆ । ସେଠୁ ସେ ପଳାଇ ଗଲା । କମାର ପରି ଗୋଟିଏ ଘରେ ପଶି ଭିତରୁ କବାଟ କିଳି ଦେଲା । ଏଥିରେ ଭୂତ ଖୁବ୍ ଖୁସି । ରନ୍ଧା ହୋଇଥିବା ଖାଦ୍ୟତକ ଖାଇ ଅନ୍ତର୍ଦ୍ଧାନ ହୋଇଗଲା । ରାଜକୁମାର ଫେରିଲା ବେଳକୁ ହାଣ୍ଡି ମାଙ୍କଡଚଢ଼ି ମାରୁଛି । ବଢେଇ ନାହିଁ କି କମାର ନାହିଁ । ସେତେବେଳେ ତାଙ୍କର ଶେଷରେ ପେଟ ଜଳୁଛି । ସେ ଅପେକ୍ଷା କରି ନିଜେ ରାନ୍ଧି ବସିଲେ ।

ରନ୍ଧା ଯେମିତି ସରିଛି ଭୂତଟି ଗୋଟିଏ ଅପରୂପ ସୁନ୍ଦରୀ ବେଶରେ ସେଠି ପହଞ୍ଚିଗଲା । ତାର ଲାସ୍ୟମୟୀ ଚେହେରା, ସୁନ୍ଦର ବ୍ୟବହାର ଆଉ ମନୋମୁଗ୍‌ଧକର ବାକ୍ୟବିନ୍ୟାସ ରାଜପୁତ୍ରଙ୍କୁ ଟଳାଇ ପାରିଲା ନାହିଁ । ବରଂ ରାଜପୁତ୍ର ତାର ପାଦକୁ ଅନାଇ ଦେଖିଲେ, ସାଧାରଣ ମଣିଷ ପରି ତାର ପାଦ ଆଗକୁ ନୁହେଁ । ପଛକୁ । ତେଣୁ ତାକୁ ଭୂତ ବୋଲି ସେ ଧରିନେଲେ । ତାପରେ ଖଣ୍ଡା ବାହାର କରି କହିଲେ—"ମୁଁ କୌଣସି ସୁନ୍ଦରୀ ଯୁବତୀକୁ ହତ୍ୟା କରିବାକୁ ପ୍ରସ୍ତୁତ ନୁହେଁ । ତୁମେ ରୂପ ବଦଳାଅ ।"

ଭୂତଟି ଏଥର ଖୁବ୍ ରାଗିଗଲା । ତାର ବିକଟାଳ ରୂପଧରି ରାଜପୁତ୍ରଙ୍କୁ ଖାଇବାକୁ ଧାଇଁଲା । ରାଜପୁତ୍ର ଏକା ଚାହାଁରେ ତାର ମୁଣ୍ଡ ଗଣ୍ଡିରୁ ଅଲଗା କରିଦେଲେ । ମଲାବେଳେ ତାର ଯେଉଁ ବିକଟାଳ ଗର୍ଜନ, ତାହା କମାର ଓ ବନଡ଼ଇ ଶୁଣିଲେ । ସାହସ ତାଙ୍କର ବଢ଼ିଗଲା । ସେମାନେ କବାଟ ଖୋଲି ପଦାକୁ ଆସିଲେ । ସେମାନଙ୍କର ରକ୍ଷାକର୍ତ୍ତା ଯୁବରାଜଙ୍କ ଗୋଡ଼ତଳେ ପଡ଼ିଗଲେ । ସହରରୁ ପଳାଇଥିବା ଲୋକମାନଙ୍କୁ ଚାରଭୁଜ ଡକାଇଲେ । ସେମାନେ ଭାରି ଖୁସି । ସମସ୍ତେ ଏକଜୁଟ ହୋଇ ଚାରଭୁଜଙ୍କ ଜୟଜୟ ଗାନ କଲେ ।

ଚାରଭୁଜ ରାଜାପିଲା । ପିଲାଦିନରୁ ତୋଷାମଦ ସହିତ ସେ ସୁପରିଚିତ । ତେଣୁ ଲୋକମାନଙ୍କ କଥାରେ ସେ ଭୁଲିଲେ ନାହିଁ । ବରଂ ପରିଷ୍କାର ଭାବରେ କହିଲେ—"ଆମେ ଭୂତମାରିଛୁ । ରାଜ୍ୟ ଆମର । କମାର ଆମ ତରଫରୁ ଏଠି ରହିବ । ସେ ହେବ ରାଜା । ତୁମେମାନେ ଏ ରାଜ୍ୟକୁ ଫେରି ଆସ । ବସବାସ କରି ରୁହ । ତୁମେ ପ୍ରଥମେ ଗୋଟିଏ ସୁନ୍ଦରୀ କନ୍ୟା ତମର ରାଜା ପାଇଁ ଯୋଗାଡ଼ କର । ତାର ବିବାହ ହେବ । ତାପରେ ସେ ଅଭିଷେକ ହୋଇ ରାଜଗାଦୀରେ ବସିବ । ଆମେ ଅଭୟ ଦେଉଛୁ—ରାଜା ହେବାପରେ ସେ ତମର ମଙ୍ଗଳ ପାଇଁ ଶାସନ କରିବ । ଏ ଦେଶରେ ଦୁଃଖୀରଙ୍କି ରହିବେ ନାହିଁ । ସମସ୍ତଙ୍କୁ ସମାନ ଦୃଷ୍ଟିରେ ଦେଖିବ । ସମସ୍ତଙ୍କର ସୁଖଶାନ୍ତି ସମୃଦ୍ଧି ପାଇଁ ସେ ଦାୟୀ ରହିବ ।"

ଲୋକମାନେ ଏ ପ୍ରକାର ଘୋଷଣାରେ ଆନନ୍ଦିତ । ସମସ୍ତେ ସାଧୁ ସାଧୁ କହିଲେ । କନ୍ୟା ଠିକ୍ କରିବା ଏବଂ ବିବାହର

ଆୟୋଜନରେ ପ୍ରଜାମାନେ ଲାଗିଗଲେ । ଅଳ୍ପଦିନ ଭିତରେ ଖୁବ୍ ଜାକଜମକରେ କୁମାରୀର ବିବାହ ସରିଗଲା । ତାପରେ ତାର ଅଭିଷେକ ହେଲା । କୁମାରୀ ଏବେ ଏ ରାଇଜର ରାଜା । ଶାସନ ବି କଲାଣି । ତା ଶାସନ ଯେ ଲୋକଙ୍କର ମଙ୍ଗଳମୟ ହେବ, ଏହା ସାରବୁଙ୍ଗଙ୍କର ହୃଦବୋଧ ହେଲା । ଏଣେ ସାରବୁଙ୍ଗ ପୁଣି ବୁଲି ବାହାରିଲେ । ସାଥିରେ ବଡ଼େଇ ବନ୍ଧୁ । କୁମାରୀ ସାଥିରେ ଯିବା ପାଇଁ ଅନୁନୟ କଲା । ସାରବୁଙ୍ଗ ତାହା ପ୍ରତ୍ୟାଖ୍ୟାନ କରିଦେଲେ । ଗଲାବେଳେ କେତୋଟି ଯବଧାନ ଗଛ ଦେଇ କହିଲେ—"ଏ ମୋର ପ୍ରାଣ । ଏହାକୁ ଯତ୍ନରେ ରଖିଥିବ । ଏହା ଝାଉଁଳି ପଡ଼ିଲେ ଜାଣିବ—ମୋତେ ବିପତ୍ତି ପଡ଼ିଛି । ଇଚ୍ଛା ହେଲେ ସାହାଯ୍ୟ କରିବାକୁ ଶୀଘ୍ର ଯିବ ।"

କିଛିଦିନ ବୁଲିବୁଲି ସାରବୁଙ୍ଗ ବଡ଼େଇବନ୍ଧୁ ସାଥିରେ ଆଉ ଗୋଟିଏ ସହରରେ ପହଞ୍ଚିଲେ । ତାର ପରିବେଶ ଶାନ୍ତ ଓ ସୁନ୍ଦର । ସାରବୁଙ୍ଗଙ୍କୁ ଖୁବ୍ ଭଲ ଲାଗିଲା । ସେଠି ସେ କିଛିଦିନ ରହିଗଲେ । ତାହା ଭିତରେ ବଡ଼େଇଟି ଗୋଟିଏ ଝିଅର ପ୍ରେମରେ ପଡ଼ିଗଲା । ଝିଅଟି ଭଦ୍ର ଓ ତାର ପରି ସୁନ୍ଦର । ସ୍ନିଗ୍ଧ । ତାକୁ ବିବାହ କରି ସଂସାର କରିବାକୁ ବଡ଼େଇଟିର ଖୁବ୍ ଇଚ୍ଛା । ହାତରେ ସେଥିପାଇଁ ଅର୍ଥ ନାହିଁ । ବଡ଼େଇଟି ବେଳେବେଳେ ଦୀର୍ଘ ନିଶ୍ୱାସ ପକାଏ । ତାର ଅଭିଯୋଗ—ରାଜପୁତ୍ର ସବୁ ବୁଝିଥାନ୍ତେ, ସାହାଣଦିଆ ଓ କୁମାରୀ ପରି ତାକୁ ସୁନ୍ଦରୀ ସ୍ତ୍ରୀ ବିବାହ କରାଇ ରାଜା କରି ଦେଇ-ଥାଆନ୍ତେ । ସେ କଥା ସେ ବୁଝିଲେ ନାହିଁ । ସାଥିରେ ଧରି ବୁଲିଲେ । ଏଇନେ ସେ ବିବାହ ପାଇଁ ବ୍ୟସ୍ତ । କିଛି ସୁବିଧା ହୋଇ ପାରୁନାହିଁ । ଏକଥା ସାରବୁଙ୍ଗଙ୍କ କାନକୁ ଗଲା । ସେ ରାଜ୍ୟର ମୁଖିଆମାନଙ୍କୁ ଡକାଇ ପଠାଇଲେ । ଜଙ୍ଗଲର କିଆଁ

ପରି ରାଜପୁତ୍ରଙ୍କ ଖ୍ୟାତି ଚାରିଆଡ଼େ ବ୍ୟାପ୍ତ । ତାଙ୍କ ଡାକରକୁ ବେଖାତିର କରିବାକୁ ସାହାସ କାହାର ? ସମସ୍ତେ ଆସିଲେ । ସମସ୍ତେ ତାଙ୍କ କଥା କାନ ଦେଇ ଶୁଣିଲେ । ରାଜପୁତ୍ର କହିଲେ—“ବଢ଼େଇଟି ତାଙ୍କର ରାଜା ହେଲେ, ସୁଶାସନ କରିବ । ପ୍ରଜାଙ୍କର ଦୁଃଖ ରହିବ ନାହିଁ । ରାଜପୁତ୍ରଙ୍କ କଥାକୁ ନ ମାନିବାକୁ କାହାର ସାହସ ନଥିଲା । ବଢ଼େଇକୁ ସେମାନେ ରାଜା କଲେ । ବଢ଼େଇଟି ଯାହାକୁ ଭଲ ପାଉଥିଲା, ତାକୁ ବାହାହୋଇ ରାଣୀ କଲା । ପରେ ସାଉଣ୍ଟୁଙ୍କ ଏକା ବାହାରିଲେ ।

ଏଥର ବଢ଼େଇଟି ସାଉଣ୍ଟୁଙ୍କ ଉପରେ ସନ୍ତୁଷ୍ଟ । ସାଉଣ୍ଟୁଙ୍କ ଗଲେ, ସେ ଅସହାୟ ହୋଇଯିବ । ସେଥିପାଇଁ ସେ ସାଉଣ୍ଟୁଙ୍କଙ୍କ ଗୋଡ଼ତଳେ ପଡ଼ି ତାକୁ ସାଥିରେ ନେବାକୁ ଅନୁରୋଧ କଲା । ରାଜପୁତ୍ର ରାଜି ହେଲେ ନାହିଁ । ସେ ଏକୁଟିଆ ବାହାରି ପଡ଼ିଲେ । ଚାଲିବେଳେ କିଛି ଯବଧାନ ଗଛ ଦେଇ କହିଲେ—“ଏ ମୋର ପ୍ରାଣ । ଏହାକୁ ଯତ୍ନରେ ରଖିଥିବ । ମୁଁ ବିପଦରେ ପଡ଼ିଲେ, ଏହା ଝାଉଁଳିବ । ସେତିକବେଳେ ଯଦି ବୁଝିବ, ମୋତେ ସାହାଯ୍ୟ କରିବାକୁ ଆସିପାର ।”

ଏଥର ରାଜକୁମାର ଏକୁଟିଆ । ସେ ବହୁ ଦେଶ ଭ୍ରମଣ କଲେ । ନାନାଦି ପ୍ରକାର ଅସୁବିଧା ଆସିଲା । ତାକୁ ଅତିକ୍ରମ କରିବାକୁ ତାଙ୍କୁ କଷ୍ଟ ବି ହେଲା ନାହିଁ । ଶେଷକୁ ସେ ଗୋଟିଏ ନଈକୂଳରେ ପହଞ୍ଚିଲେ । ନଈଟି ବେଶ୍ ବଡ଼ । ସୁଗଭୀର । ସ୍ରୋତ ତାର ଧୀର, ମନ୍ଥର । ପାଖରେ ଏକ ବିରାଟ ବରଗଛ । ତା’ର ଛାଇ ତଳେ ବସି ସେ ନଈକୁ ଅନାଇ ରହିଲେ । ଉଦାସ ଭାବ ତାଙ୍କ ଚାହାଣୀ । ମନ ତାଙ୍କର ଚିନ୍ତା ଶୂନ୍ୟ । ନଦୀର ସ୍ରୋତ ଉପରେ ଆଖି ରହିଥାଏ ।

ହଠାତ୍ ପାଣିରେ ଭାସି ଯାଉଥିବା ପଦ୍ମରାଗମଣି ଦେଖି, ମନ ତାଙ୍କର ଚଞ୍ଚଳ ହୋଇ ଉଠିଲା । ସେ ନଈକୂଳରେ ଆସି ଠିଆ ହେଲେ । ଦେଖିଲେ, ଗୋଟିଏ ନୁହେଁ, ବହୁ ପଦ୍ମରାଗମଣି ଭାସି ଆସୁଛି । କିନ୍ତୁ ଏକ ନିର୍ଦ୍ଦିଷ୍ଟ ବ୍ୟବଧାନରେ । ପଦ୍ମରାଗମଣି ଏମିତି ଭାବରେ ଭାସିବା ଏକ ଆଶ୍ଚର୍ଯ୍ୟ କଥା । ଅବିଶ୍ୱାସ ଯୋଗ୍ୟ । କିନ୍ତୁ ଯୁବରାଜ ସେ ସବୁ ତ ନିଜ ଆଖିରେ ଦେଖୁଛନ୍ତି । ଅବିଶ୍ୱାସ କିମିତି ବା କରିବେ ? କିନ୍ତୁ ଭାବିଲେ, ଏହା ଅସାଧାରଣ, ତେଣୁ ଏହା ପଛରେ କିଛି ଗୂଢ଼ ରହସ୍ୟ ଅଛି । ତେଣୁ ସ୍ଥିର କଲେ, ଯେଉଁଠୁ ଏ ସବୁ ପଦ୍ମରାଗମଣି ଭାସି ଆସୁଛି, ସେ ଜାଗାକୁ ସେ ଦେଖିବେ ।

ଦୁଃସାହସିକ କାର୍ଯ୍ୟ କରିବାରେ ଯୁବରାଜ ଧୁରନ୍ଧର । ଏ ପ୍ରକାର କାର୍ଯ୍ୟ ପଡ଼ିଲେ, ସେ ଭୋକ ଶୋଷ ଭୁଲି ଯାଆନ୍ତି । ଆଖିକୁ ନିଦ ଆସେ ନାହିଁ । ଯୁବରାଜ ସେଇ ମୁହୂର୍ତ୍ତରେ ବାହାରିପଡ଼ିଲେ । ସ୍ରୋତର ପ୍ରତିକୂଳ ଦିଗରେ ଚାଲିଲେ । ଦୁଇ ଦିନ ଓ ଦୁଇ ରାତି ସେ ଟିକିଏ ବିଶ୍ରାମ ବି ନେଇ ନାହାନ୍ତି । ସେ ଚାଲି ଥାଆନ୍ତି । କ୍ଳାନ୍ତ ବି ହୋଇନଥାଆନ୍ତି । ବାଟଚଲା ପାଇଁ ସେ ବ୍ୟସ୍ତ କି ଚିନ୍ତିତ ନୁହନ୍ତି । କିନ୍ତୁ ପଦ୍ମରାଗମଣି ଆସୁଥିବାର ରହସ୍ୟ ଉଦ୍‌ଘାଟିତ ହୋଇ ପାରିଲା ନାହିଁ । ସେଇଟା ହିଁ ତାଙ୍କର ଦୁଃଖ । ଅନୁଶୋଚନା ।

ତୃତୀୟ ଦିନର ସକାଳ । ଯୁବରାଜ ଶାରଭୁଙ୍ଗ ଗୋଟିଏ ଝଙ୍ଗ ମଲମଲ ପ୍ରାସାଦ ନିକଟରେ ପହଞ୍ଚିଲେ । ତାହା ଖୁବ୍ ବିରାଟ । ବେଶ୍ ସୁନ୍ଦର ମଧ୍ୟ । ଚାହିଁଲେ ଆଖି ଲାଖି ରହେ । ଗଠନ କୌଶଳ ତାର ଅଦ୍‌ଭୁତ । ଅଧେ ତାର ଜଳଭାଗରେ । ଆଉ ଅଧିକ ନଈ

ଭିତରେ । ତାକୁ ଲାଗି ଏକ ବିରାଟ ଗଛ । ଡାଳ ତାର ସବୁ ଲମ୍ବି ଯାଇଛି । ତା ଭିତରୁ ଗୋଟିଏ ନଈ ମଝି ପର୍ଯ୍ୟନ୍ତ ଲମ୍ବିଛି । ସେଇ ଡାଳରେ ଏକ ସୁନ୍ଦର ସୁନା ଝୁଡ଼ି ବନ୍ଧା ହୋଇ ଝୁଲୁଛି । ସେଥିରୁ ଟୋପା ଟୋପା ରକ୍ତ ପାଣିରେ ପଡ଼ିବା ମାତ୍ରେ ପଦ୍ମରାଗମଣି ପାଲଟି ଯାଉଥାଏ ।

ଯୁବରାଜଙ୍କର କୌତୂହଳ ବଢ଼ିଲା । ସେ ଡାଳରେ ଚଢ଼ି ଝୁଡ଼ି ପର୍ଯ୍ୟନ୍ତ ଗଲେ । ସେଠି ଯାହା ଦେଖିଲେ, ତାଙ୍କ ଦେହ ଶୀତେଇ ଉଠିଲା । ଝୁଡ଼ି ଭିତରେ ସଦ୍ୟ କଟା ମୁଣ୍ଡଟାଏ । ତା ପୁଣି ଅନିନ୍ଦ୍ୟ ସୁନ୍ଦରୀ ଯୁବତୀର । ତାର କେଶ ଖୁବ୍ ଲମ୍ବା । ସୁବର୍ଣ୍ଣ ରଙ୍ଗର । ତାହା ଫୁ ରୁ ଫୁ ରୁ ହୋଇ ପବନରେ ଉଡ଼ୁଛି । ସେଇ କଟା ମୁଣ୍ଡରୁ ଟୋପା ଟୋପା ରକ୍ତ ନଦୀରେ ପଡ଼ୁଛି । ତାହା ପଦ୍ମରାଗମଣି ପାଲଟିଯାଇ ଭାସି ଯାଉଛି ।

ଏ ଦୃଶ୍ୟ ଦାରୁଣ । ମର୍ମନ୍ତୁଦ । ହୃଦୟ ବିଦାରକ । ଏ ଜଘନ୍ୟ କାଣ୍ଡ କିଏ କରିଛି, ଆଉ କାହିଁକି କରିଛି, ତାହା ଜାଣିବାକୁ ସେ ବ୍ୟଗ୍ର । ପାଖରେ ପ୍ରାସାଦ ଛଡ଼ା କେଉଁଠି ଜନ ବସତି ନାହିଁ । ତେଣୁ ଘଟଣା ବିଷୟରେ ଅନୁସନ୍ଧାନ କରିବାକୁ ପ୍ରାସାଦକୁ ଗଲେ ।

ପ୍ରାସାଦ ଭିତରେ ଅସଂଖ୍ୟ କୋଠରୀ । ସବୁ ଗୁଡ଼ିକ ବଡ଼ ବଡ଼ । ସୁନ୍ଦର ଭାବରେ ସଜ୍ଜିତ । ବାରଣ୍ଡା ସବୁ ପ୍ରଶସ୍ତ । କିନ୍ତୁ ଆଶ୍ଚର୍ଯ୍ୟ । କେଉଁଠି ହେଲେ କାଣି ବରାଡ଼ିଟିଏ ବି ଦେଖିବାକୁ ମିଳିଲା ନାହିଁ । କିନ୍ତୁ ସେ ଛାଡ଼ିବାର ପାତ୍ର ନୁହନ୍ତି । ପ୍ରାସାଦର ସବୁ ଅଂଶ ସେ ଠିକ ନିଖି କରି ଦେଖୁଥାନ୍ତି ।

ପ୍ରାସାଦର ଗୋଟିଏ ମୁଣ୍ଡକୁ କୋଠରୀଟିଏ । ସେଥିରେ ରୁପାର ଖଟଟିଏ ଝୁଲୁଛି । ଖଟଟି ତାରକସୀ କାମରେ ପରିପୂର୍ଣ୍ଣ । ଉପରେ

ସିଲ୍କ ଚଦର ବସ୍ତ୍ର ହୋଇଛି । ସନ୍ଦେହ ତାଙ୍କର ହେଲା । ଭିତରକୁ ପଶିଲେ । ଯାହା ଦେଖିଲେ, ଆଖି ତାଙ୍କର ବିସ୍ଫାରିତ ହୋଇଗଲା । ସେଠି ଖଟ ଉପରେ ଏକ ସୁନ୍ଦରୀ ଯୁବତୀର ଦେହ ପଡ଼ି ରହିଛି । ତାର ମୁଣ୍ଡ ନାହିଁ । ସଦ୍ୟ କଟାହୋଇ ଯାଇଛି । ରାଜପୁତ୍ରଙ୍କର ବିଶ୍ୱାସ ହେଲା, ସମ୍ଭବତଃ ଏହି ସ୍ତ୍ରୀ ଲୋକର ମୁଣ୍ଡ ସେଠାରେ ଝୁଲି ଯାଇଛି । ସେ ଯାଇ ଜଘା ଉପରେ ଝୁଲୁଥିବା ସୁନା ଭୃଙ୍ଗୁଡ଼ିଟି ଧରି ଆସିଲେ । ତହିଁରୁ କଟା ମୁଣ୍ଡଟି ବାହାର କରି ଆଣି ଗଣ୍ଡି ଦେହରେ ଲଗାଇ ଦେଲେ । ସେ ଅନାଇ ଥାଆନ୍ତି । ଗଣ୍ଡି ମୁଣ୍ଡ ଲାଗିଗଲା । ସୁନ୍ଦରୀ ଯୁବତୀଟି ଏବେ ଜୀବନ୍ତ । ଉଠି ବସିଲାଣି । ରାଜପୁତ୍ର ଏତେ ଖୁସି ହୋଇଗଲେ ଯେ ସ୍ଥାନ, କାଳ, ପାତ୍ର କଥା ଭାବିଲେ ନାହିଁ । ସେଇ ଖଟ ପାଖରେ ନତଜାନୁ ହୋଇ ବସି ପଡ଼ିଲେ ।

କିଛି ସମୟ ବିତିଗଲା । କାହାରି ପାଟିରେ କଥା ନାହିଁ । ତା' ପରେ ଯୁବରାଜ ଝିଅଟିକୁ ପଚାରିଲେ—"ଆପଣ କିଏ ? ଏଇ ପରିତ୍ୟକ୍ତ ଜଆସକୁ କିପରି ଆସିଲେ ? କିଏ କାହିଁକି ଆପଣଙ୍କୁ ହତ୍ୟା କରି ଏପରି ଭାବରେ ସୁନା ଭୃଙ୍ଗୁଡ଼ିରେ ଝୁଲାଇଥିଲା ?

ଝିଅଟି କହିଲା—"ମୁଁ ଜଣେ ରାଜକନ୍ୟା । ମୋ ସୌନ୍ଦର୍ଯ୍ୟରେ ଗୋଟିଏ ମୁସଲମାନ ପ୍ରେତ ପାଗଳ । ଏଇଟା ତାର ଘର । ସେ ମୋତେ ଏଠାକୁ ଘେନି ଆସିଛି । ମୋତେ ଦଣ୍ଡେ ଛାଡ଼ିବାକୁ ସେ ବି ପ୍ରସ୍ତୁତ ନୁହେଁ । ଦିନଯାକ ବୁଲିବା ତାର ଅଭ୍ୟାସ । ଏଠୁ ଗଲାବେଳେ ସେ ମୋ ମୁଣ୍ଡ କାଟି ଦିଏ । ତାକୁ ସୁନା ଭୃଙ୍ଗୁଡ଼ିରେ ରଖେ । ଗଣ୍ଡିଟି ଏଠି ପଡ଼ିଥାଏ । ସୁନା ଭୃଙ୍ଗୁଡ଼ିଟି

ନେଇ ସେ ବରଗଛରେ ଝୁଲାଇ ଦିଏ । ଫେରିଲେ, ସୁନା ସୂତା ଫେରି ଆଣେ । ମୁଣ୍ଡଟିକୁ ମୋର ଗଣ୍ଡିରେ ଲଗାଇ ଦିଏ । ମୁଁ ବଞ୍ଚି ଉଠେ । ମୋର ଏ ଜୀବନ ଅସହ୍ୟ । ମର୍ମନ୍ତୁଦ । ଏଇ ପ୍ରେତ ହାତରୁ ରକ୍ଷା ପାଇବାକୁ ମୁଁ ଚାହେଁ । କିନ୍ତୁ ଉପାୟ ନାହିଁ ।”

“ଯଦି ଆପତ୍ତି ନଥାଏ, ଚାଲ ବର୍ତ୍ତମାନ ଏଠୁ ପଳାଇବା ।” ଏହା ଥିଲା ପାରିଭୁଙ୍କଙ୍କ ପ୍ରସ୍ତାବ ।

ରାଜକୁମାରୀ କହିଲେ—“ଏ ପ୍ରେତ ଅସମ୍ଭବ ରକମର ଧୂର୍ତ୍ତ । ତା ଛଡ଼ା ତାର ଅକଳନ ବଳ । ଯାଦୁ ବିଦ୍ୟାରେ ସେ ପାରଙ୍ଗମ । ଆପେ ପଳାଇଗଲେ, ଆମକୁ ଧରି ଆଣିବ । କି ଯନ୍ତ୍ରଣା ଦେବ, ତା କଳ୍ପନା କରି ହେବ ନାହିଁ । ତାକୁ ଆଗ ମରାଯାଉ । ତାପରେ ପଳାଇବାରେ କିଛି ପ୍ରତିବନ୍ଧକ ନଥିବ ।”

ପାରିଭୁଙ୍କ କହିଲେ—“ତମର ପରାମର୍ଶ ଠିକ୍ । ଗ୍ରହଣୀୟ । କିନ୍ତୁ ଯଦି ସେ ଏତେ ଦୁର୍ଦ୍ଦାନ୍ତ, ତାକୁ ମାରିବା କି ବହୁତ କଷ୍ଟକର ହେବ । ମୋର ବିଶ୍ୱାସ, ମୁଁ ତାକୁ ଯୁଦ୍ଧରେ ପରାସ୍ତ କରି ହତ୍ୟା କରିବି ।”

ରାଜକନ୍ୟା କହିଲେ—“ସେ ଅଜେୟ । ସେ ମାୟାବୀ । ତାକୁ ଯୁଦ୍ଧରେ ହତ୍ୟା କରିବା ଅସମ୍ଭବ । ତାର ମରଣ କାଠିକା ଅଛି । ମୁଁ ଛଳନା କରି ବୁଝେ । ତାହେଲେ ବିନା ଯୁଦ୍ଧରେ ତାକୁ ହତ୍ୟା କରିବା ସହଜ ହେବ ।”

କଥାଟା ପାରିଭୁଙ୍କଙ୍କ ମନକୁ ପାଇଲା । ଏ ପ୍ରସ୍ତାବରେ ସେ ରାଜି । ସେ ରାଜକୁମାରୀଙ୍କର ପରାମର୍ଶ ଗ୍ରହଣ କଲେ ।

ରାଜକୁମାରୀ କହିଲା—"ବର୍ତ୍ତମାନ ମୋ ମୁଣ୍ଡ ଗଣ୍ଡିରୁ ଅଲଗା କର । ଯେଉଁଠି ଓ ଯେମିତି ସୁନା ଖଟ ଉପରେ ଥିଲା, ସେଇମିତି ରଖିଦେଇ ଆସ । ଏଇ ଶୋଇବା ଘରକୁ ଲାଗି ଗାଧୁଆ ଘର । ପ୍ରେତ ତାହା ଭିତରକୁ କେବେ ହେଲେ ଯାଏ ନାହିଁ । ତୁମେ ସେଇ ଘରେ ଲୁଚି କରି ରୁହ ।"

ପ୍ରଥମେ ରାଜକୁମାରୀଙ୍କର ମୁଣ୍ଡ ତାଙ୍କ ଗଣ୍ଡିରୁ ଅଲଗା କରିବାକୁ ଯୁବରାଜ ରାଜି ହେଲେ ନାହିଁ । ବରଂ କହିଲେ—"ଏହା ଏକ ଜଘନ୍ୟ କାର୍ଯ୍ୟ । ବିନା ଯୁଦ୍ଧରେ କାହାକୁ ହତ୍ୟା କରିବା ଅନ୍ୟାୟ । ମହାପାପ । କ୍ଷତ୍ରିୟ ହୋଇ ମୁଁ ତାହା କରି ପାରିବି ନାହିଁ ।"

ରାଜକୁମାରୀ କହିଲା—"ତୁମେ ମୋତେ ହତ୍ୟା କରୁନାହଁ । ମୋର ଗଣ୍ଡିରୁ ମୁଣ୍ଡ ଅଲଗା କରିବା ଏକ ଛଳନା । ପ୍ରେତର ଆଖିକୁ ଭଣ୍ଡାଇବା ପାଇଁ ଏହା ଏକ କୌଶଳ । ତେଣୁ ତମର ଏଥିରେ ଦୁଃଖ କରିବାର କିଛି ନାହିଁ । ବରଂ ଏହା ଆମ୍ଭ ଉଭୟଙ୍କ ପ୍ରତି ମଙ୍ଗଳକର । ମୋ ସୁନାଝାପର । ମୋ କଥା ମାନ । ଶୀଘ୍ର ଯଦି ଏହା ସମ୍ପାଦନ ନକର, ପ୍ରେତ ଆସିଯିବ । ଆମ୍ଭ ଦୁହିଁଙ୍କର ଦଫା ରଫା ଶେଷ କରିଦେବ ।"

ବହୁ ପ୍ରବର୍ତ୍ତନା ଫଳରେ ଯୁବରାଜ ରାଜି ହେଲେ । ଅନନ୍ୟୋ-ପାୟ ହୋଇ ଖଣ୍ଡା ଉଠାଇ ରାଜକୁମାରୀର ଗଣ୍ଡିରୁ ମୁଣ୍ଡ ଅଲଗା କରିଦେଲେ । ତାପରେ, ସୁନା ଖଟ ଉପରେ ମୁଣ୍ଡଟିକୁ ରଖି ଯେଉଁଠି ଥିଲା, ରଖି ଆସିଲେ । ରାଜକୁମାରୀର କଥାନୁସାରେ ଗାଧୁଆଘରେ ଲୁଚିରହିଲେ ।

କିଛି ସମୟ ପରେ ମୁସଲମାନ ପ୍ରେତ ଆସିଲା । କଟାମୁଣ୍ଡ ଆଣି ଗଣ୍ଡିରେ ଲଗାଇଲା । ରାଜକୁମାରୀକୁ ଉଠି ବସିବାକୁ ସେ

କହିଲା—"ହଁ ହଁ ମଣିଷ ମାଉଁସର ବାସ୍ନା ଏଠି ହେଉଛି । କେଉଁଠୁ କଏ ମନୁଷ ଆସି ଯାଇଛି ? ଖୋଜ ବାହାର କରିବାକୁ ହେବ । ମିଳିଗଲେ ମୋର ଖାଦ୍ୟ ହୋଇଯିବ ।"

ରାଜକୁମାରୀ ପ୍ରେତର କଥା ଶୁଣି ଡରିଗଲା । ସେ ଛଳନା କରି କାନ୍ଦି କାନ୍ଦି କହିଲା । "ହେ ପ୍ରିୟ ପ୍ରେତ ମୋର । ତୁମେ ନଥିଲା ବେଳେ ମୁଁ ମୃତ । କେଉଁଠି କ'ଣ ହୁଏ ମୁଁ ଜାଣିବା ମୁସ୍କିଲ । ତୁମେ ଆସିଲେ ମୁଁ ଜୀବନ ପାଏ । ସଂସାର କ'ଣ ଜାଣେ । ତୁମେହିଁ ମୋର ଜୀବନ । ସୁଖ । ଆନନ୍ଦ । ଏଇ ଆନନ୍ଦ ମୋର କିନ୍ତୁ କ୍ଷଣସ୍ଥାୟୀ । କାରଣ ତୁମେ ଅଳ୍ପ ସମୟ ପରେ ଚାଲିଯିବ । ମୋର ଶରୀର ଏଠି ପଡ଼ି ରହିବ । ଏଇ ଅଳ୍ପ ସମୟ ପାଇଁ ଆସିବ । ତା ଭିତରେ ପୁଣି ସରିବ । ତାହାହେଲେ ମୋର ଜୀବନ ରହି ଲଭ ନାହିଁ । ତୁମେ ମତେ ମାରି ଦେଇ ଖାଇଦିଅ । ମୁଁ ଶାନ୍ତି ପାଇବି ।"

ରାଜକୁମାରୀ କଇଁ କଇଁ କାନ୍ଦିବାରୁ ପ୍ରେତଟିର ମନ ତରଳି ଗଲା । ତାକୁ ସେ ପ୍ରବୋଧ ଦେଲା । ଶପଥ କରି କହିଲା—"ମୁଁ ପଛେ ମରିଯିବି, ତମକୁ ମୁଁ ମାରିବି ନାହିଁ କି ଖାଇବି ନାହିଁ ।"

ରାଜକନ୍ୟା କହିଲା—"ତମ ଶପଥକୁ ମୁଁ ବିଶ୍ୱାସ କରୁଛି । କିନ୍ତୁ ତୁମେ ଯଦି ମରିଯିବ, ତାହାହେଲେ ଗଣ୍ଡି ମୁଣ୍ଡ ମୋର ଅଲଗା ହୋଇ ପଡ଼ି ରହିବ । ମୁଁ ତ ଏଇମିତି ନିର୍ଜୀବ ଭାବରେ ପଡ଼ି ରହିବି ।"

ଭୂତଟି କହିଲା—"ବ୍ୟସ୍ତ ହୁଅ ନାହିଁ । ମୋ ଜୀବନ ଖୁବ୍ ନିରାପଦରେ ଅଛି । ତେଣୁ ମୋର ମରିବାର କି ମୋତେ ମାରିବାର ପ୍ରଶ୍ନ ଉଠୁନାହିଁ ।"

ରାଜକୁମାରୀ କହିଲା—"ଏହାତ ଅତି ଉତ୍ତମ କଥା । କିନ୍ତୁ ମୋର ଯାହା ମନେହୁଏ, ମୋତେ ଭୁଲାଇବା ପାଇଁ ତମର ଏ ପ୍ରଚେଷ୍ଟା । ମୋର ତ ବୁଦ୍ଧି ଓ ବିବେକ ଅଛି । ଜୀବନ ନାମିକା ପ୍ରକୃତରେ କେଉଁଠ ଅଛି ନ କହିଲେ ଏହା ନିରାପଦରେ ଅଛି ବୋଲି ମୋର ବିଶ୍ୱାସ କିପରି ହେବ ?"

ପ୍ରଥମେ ପ୍ରଥମେ ପ୍ରେତ ତାର ଗୁପ୍ତ କଥା କହିବାକୁ ରାଜି ନ ଥିଲା । ରାଜକୁମାରୀ ଏପରି ମିଠା କଥା କହି ଫୁସୁଲାଇଲା ଯେ, ପ୍ରେତଟି ବିଚରା ତା କଥାରେ ଭୁଲିଗଲା । ଶେଷକୁ ତା ଆଖିକୁ ଯେତେବେଳେ ନିଦ ଲାଗି ଆସୁଥାଏ ଝିଅଟି ତାକୁ ଆହୁରି ଫୁସୁଲାଇଲା । ଅଧା ଜାଗ୍ରତ ଅବସ୍ଥାରେ ସେ କହିଲା—"ମୋତେ ଯୁବରାଜ ଷାରକୁଙ୍ଗ ଛଡା କେହି ମାରି ପାରିବେ ନାହିଁ । ତା ପୁଣି ତାଙ୍କ ପକ୍ଷେ ସହଜ ବି ନୁହେଁ । ଏଠୁ ଉତ୍ତର ଦିଗରେ ଅଳ୍ପ ଦୂରରେ ଅତି ନିଜାଞ୍ଜନ ଜାଗାରେ ଗଛଟିଏ ଅଛି । ତାକୁ ଗୋଟିଏ ଘୋଡା ଓ କୁକୁରଟିଏ ଜଗିଛନ୍ତି । ଦିନରାତି ସେମାନେ ଜାଗ୍ରତ । କେତେ-ବେଳେ ଢୁଳାନ୍ତି ବି ନାହିଁ । ଗଛ ଅଗରେ ସୁନାପଞ୍ଜୁରିଟିଏ ବନ୍ଧା ହୋଇଛି । ତା ଭିତରେ ଗୋଟିଏ ବଣି ଚଢ଼େଇ । ତା ପେଟରେ ଅଛି ଭଅଁରଟିଏ । ସେ ଭଅଁରକୁ ମାରିଲେ ମୁଁ ମରିବି । ତା ଏଡ଼େ ସହଜ ନୁହେଁ । ପ୍ରଥମେ ରାଜକୁମାର ଷାରକୁଙ୍ଗ ଏଠି ପହଞ୍ଚିବା ଦରକାର । ଦ୍ୱିତୀୟରେ ସେ ଅନାହତ ହୋଇ ଗଛ ପାଖରେ ପହଞ୍ଚିବାକୁ ହେବ । ମୁଁ ଯାହା ଜାଣେ, ଯେଉଁ ପଶୁ ଦୁଇଟି ଜଗିଛନ୍ତି ତାକୁ ଧପେଇବାର ଶକ୍ତି କାହାର ନାହିଁ ।"

ରାଜକୁମାରୀ କହିଲା—"ତାଙ୍କୁ କାହିଁକି ଭୁଲେଇ ହେବ ନାହିଁ କହିଲେ, ମୋର ଦୃଢ ବିଶ୍ୱାସ ହେବ ଯେ, ତମର ଜୀବନ ପ୍ରତି ବିପଦ ନାହିଁ ।"

ପ୍ରେତଟିକୁ ନଦ ଲାଗି ଆସୁଥାଏ । ବାରମ୍ବାର ନଦ ଭାଙ୍ଗି ବାରୁ ସେ ବଡ଼ ବ୍ରତ ଓ ବ୍ୟସ୍ତ । ଏଥିରୁ ରକ୍ଷା ପାଇବା ପାଇଁ ସେ କହିଲା— "ଘୋଡ଼ା ଆଗରେ ଗଦାଏ ହାଡ଼ ଆଉ କୁକୁର ଆଗରେ ଗଦାଏ ଘାସ ରଖା ଯାଇଛି । କେଣୁ ସେମାନେ ଉପାସ । ଦୂରରେ ଥିବା ଖାଦ୍ୟକୁ ସେମାନେ ଟାକ ରହିଛନ୍ତି । ଆଖିରେ ତାଙ୍କର ନଦ ନାହିଁ । ଖାଦ୍ୟ ଅଛି, ଅଥଚ ତାଙ୍କୁ ତାହା ମିଳୁନାହିଁ । ସେଥିପାଇଁ ସେମାନେ ରାଗରେ ନିଆଁ । ଯାହାକୁ ପାଇବେ ତାକୁ ଖେଦାଇ ଦିବେ । ଯଦି କେହି ବାଡ଼ିରେ ଘାସକୁ ଘୋଡ଼ା ଆଗକୁ ଆଉ ହାଡ଼ ଗଦା କୁକୁର ଆଗକୁ ଠେଲି ଦେବ, ଉଭୟେ ତାଙ୍କ ଖାଦ୍ୟ ଖାଇବାରେ ବ୍ୟସ୍ତ ରହିବେ । ସେମାନେ ତ ବହୁଦିନ ହେଲା ଉପାସ ଅଛନ୍ତି, ଖାଦ୍ୟ ମିଳିଲେ ତାଙ୍କ କର୍ତ୍ତବ୍ୟ ବି ଭୁଲିଯିବେ । ଏଇ ମଉକାରେ କେବଳ ରାଜକୁଙ୍କ ଖସି କରି ଯାଇ ଗଛଚଢ଼ି ପାରିବେ ।

ଗାଧୁଆ ଘରେ ଯୁବରାଜ ସବୁ କଥା ଶୁଣୁଥିଲେ । ପ୍ରେତଟିର ଶୋଇ ଯିବାର ସୁବିଧା ନେଇ ସେ ଗ୍ରୋଟିଆ ଗଛ ପାଖକୁ ଗଲେ । ଗଛଟି ଖୋଜି ବାହାର କରିବାକୁ ତାଙ୍କୁ କଷ୍ଟ ହେଲା ନାହିଁ । ଦେଖିଲେ ଗଛକୁ ପ୍ରକୃତରେ ଘୋଡ଼ା ଆଉ କୁକୁର ଜଗିଛନ୍ତି । ପ୍ରେତଟି ଯେମିତି କହିଥିଲା, ସେମିତି ସେ ବଡ଼ ବାଡ଼ିରେ ଘାସକୁ ଘୋଡ଼ା ପାଖକୁ ଆଉ ହାଡ଼କୁ କୁକୁର ପାଖକୁ ଠେଲି ଦେଲେ । ସତକୁସତ, ସେମାନେ ତାଙ୍କ ଖାଦ୍ୟ ଖାଇବାରେ ଏପରି ମଜ୍ଜିଗଲେ ଯେ, ରାଜକୁଙ୍କର ଗଛ ଚଢ଼ିବା କଥା ସେମାନେ ଜାଣି ପାରିଲେ ନାହିଁ । ଯୁବରାଜ ଗଛ ଉପରେ ସୁନା ପିଞ୍ଜରାକୁ ଯେମିତି ଖୋଲିଛନ୍ତି, ପ୍ରେତର ନଦ ଭାଙ୍ଗିଗଲା । ଯାହାସବୁ ଘଟି ଯାଇଛି, ସବୁ ତାକୁ ଜଳ ଜଳ ହୋଇ ଦେଖାଦେଲା । ସେ ପବନ

ବେଗରେ ଗଛ ପାଖକୁ ଧାଇଁଲା ! ଗଛ ତଳେ ତାକୁ ଦେଖି ଯୁବରାଜ ପିଞ୍ଜରାରୁ ଚଢ଼େଇକୁ ବାହାର କରି ଆଣିଲେ । ତାର ଦୁଇଟି ଡେଣା ଛିଣ୍ଡାଇ ତଳକୁ ଫିଙ୍ଗିଦେଲେ । ଫଳରେ ପ୍ରେତଟି ଆଉ ଉଡ଼ି ପାରିଲା ନାହିଁ । ଗଛ ଚଢ଼ିବାକୁ ଉଦ୍ୟମ କଲା । ରାଜକୁମାର ଚଢ଼େଇଟିକୁ ମାରି ପେଟକୁ ଭଅଁର ବାହାର କଲେ । ଭଅଁର ଗୋଡ଼ ଦୁଇଟି ଛିଣ୍ଡାଇ ଦେବାରୁ ପ୍ରେତଟି ଛୋଟା ହୋଇଗଲା । ସେ ତଳେ ପଡ଼ି ରହିଲା । ଯେତେବେଳେ ବୀରଭୃଙ୍ଗ ଭଅଁରଟିକୁ ମାରି ଦେଲେ, ଆପେ ଆପେ ପ୍ରେତଟି ମରିଗଲା ।

ବୀରଭୃଙ୍ଗ ଆନନ୍ଦ ମନରେ ରାଜକୁମାରୀଙ୍କ ପାଖକୁ ଫେରିଲେ । ଅତ୍ୟାଚାରୀ ପ୍ରେତର ମୃତ୍ୟୁ ଖବର ପାଇ ରାଜକୁମାରୀ ଭାରି ଖୁସି । ବୀରଭୃଙ୍ଗ ତାର ନିଜ ରାଜ୍ୟକୁ ଫେରିବାକୁ ପ୍ରସ୍ତାବ ଦେଲେ । ରାଜକୁମାରୀ କହିଲେ—"ଏ ଜାଗା ଖରାପ ନୁହେଁ, ଏଠି ଅନ୍ୟ ଲୋକ ପହଞ୍ଚିବା ମୁସ୍କିଲ । ଆମେ ଦୁହେଁ କିଛିଦିନ ଆଉ ଜୀବନ ଉପଭୋଗ କରିବା । ତାପରେ ତମ ରାଜ୍ୟକୁ ଯିବା ।

ରାଜକୁମାରଙ୍କର କାମ କିଛି ନଥିଲା । ବହୁଦିନ ବୁଲି ବୁଲି ସେ ତ ହାଲିଆ । ଶାନ୍ତିରେ ବିଶ୍ରାମ ଚାହୁଁଥିଲେ । ତା ବି ଏଠି ମିଳି ଯାଉଛି । ତେଣୁ ରାଜକୁମାରୀର କଥାରେ ସେ ହଁ ଭରିଲେ । ଉଭୟେ ଆନନ୍ଦରେ ଥାନ୍ତି ।

ସବୁ ସୁଖ ସବୁଦିନ ପାଇଁ ରହେ ନାହିଁ । ସେଦିନ ରାଜକୁମାର ମୃଗୟାକୁ ଯାଇଥାନ୍ତି । ଘରେ ଏକା ରାଜକୁମାରୀ । ଏକୁଟିଆ ବସି ବସି ଛଟା ଲାଗିଲା । ତାଙ୍କର ବାଳଗୁଡ଼ିକ କେଉଁଦିନୁ ସଫା ହୋଇ ନଥିଲା । ତାକୁ ସବୁ ସଫା କରିବାକୁ ସେ ନଦୀକୁ ଗଲେ । ସେଠି ବାଳ ସଫା କରି କୁଣ୍ଡାଇଲାବେଳେ, କିଛି ଅଲଗା ବାଳ ଛିଣ୍ଡି

ଆସିଲା । ତାଙ୍କ ବାଳସବୁ ସୁନାଭଳି ଝଟକୁଥାଏ । ତାପ୍ରତି ତାଙ୍କର ଖୁବ୍ ଲୋଭ । ଅଡୁଆ ହେଲେବି ବାଳଚକ ନଖାଗର୍ଭକୁ ଚିଙ୍ଗିବାକୁ ତାଙ୍କର ଇଚ୍ଛା ହେଲା ନାହିଁ । ପାଖ ଗଛର ଶୁଖିଲା ପତ୍ର ପଡ଼ିଥିଲା । ତାକୁ ଗୋଟେଇ ଆଣିଲେ । ସେଥିରେ ଦାନଟିଏ କଲେ । ସେଥିରେ ଅଡୁଆ ବାଳକୁ ରଖି ଭସାଇ ଦେଲେ ।

ତଳ ଭାଗରେ ଏଇ ନଈ କୂଳରେ ଗୋଟିଏ ସହର । ତାହା ସୁନ୍ଦର ଓ ସମୃଦ୍ଧ । ସେଠାକାର ରାଜା ଜଣେ ଯୁବକ । ଅବିବାହିତ । ନଈରେ ଡ଼ଙ୍ଗାରେ ଖେଳିବାକୁ ତାଙ୍କର ଭାରି ସଉକ । କାମ ନ ଥିଲେ ସେ ନଈରେ ଡ଼ଙ୍ଗା ବାହନ୍ତି । ସେ ଦିନ ସେ ଡ଼ଙ୍ଗାରେ ଖେଳୁ ଥାଆନ୍ତି । ପତ୍ର ଦାନଟି ଅଳ୍ପ ଦୂରରେ ନଈରେ ଭାସି ଯାଉ-ଥାଏ । ଦାନ ଭିତରେ ସୁନେଲି ବାଳ । ସେଥିରେ ସୂର୍ଯ୍ୟକିରଣ ପଡ଼ି ଚକଚକ କରୁଥାଏ । ରାଜାଙ୍କର ନଜରରେ ତାହା ପଡ଼ିଗଲା । ଜିନିଷଟା କ'ଣ ଜାଣିବାକୁ ସେ ଆଗ୍ରହୀ । ତାକୁ ଆଣିବାକୁ ସେ ନାଉରିଆକୁ ଆଦେଶ ଦେଲେ । ନାଉରିଆ ଡ଼ଙ୍ଗା ବାହି ଦାନଟିକୁ ଡଙ୍ଗା ଉପରକୁ ଉଠାଇ ଆଣିଲା ।

ରାଜା ସେ ବାଳକୁ ଦେଖି ମୁଗ୍ଧ । ଭାବିଲେ, ଏପରି ସୁନ୍ଦର ବାଳ କେବେହେଲେ ସେ ଜୀବନରେ ଦେଖି ନାହାନ୍ତି । ତାହାର ଅଧା ମଧ୍ୟ ଦେଖିବାର ସୌଭାଗ୍ୟ ତାଙ୍କ ଭାଗ୍ୟରେ ଜୁଟିନାହିଁ । ଏ ବାଳ ତ ଏପରି ସୁନ୍ଦର । ଏ ବାଳ ଯାହାର ହୋଇଥିବ, ସେ କେଡ଼େ ସୁନ୍ଦର ହୋଇ ନଥିବ । ତାକୁ ଦେଖିବାକୁ ତାଙ୍କର ଭାରି ଇଚ୍ଛା ହେଲା ।

ରାଜା ସେ । ଅପୂର୍ବ ତାଙ୍କୁ କିଛି ନାହିଁ । ତଥାପି କାହାର ଏ ବାଳ ଏ ବିଷୟରେ ସେ ବହୁତ ଅନୁସନ୍ଧାନ କଲେ । ଏ ବିଷୟରେ କେହି କିଛି ଖବର ଦେଇ ପାରିଲେ ନାହିଁ ।

ରାଜାଙ୍କ ଆଖିକୁ ନିଦ ନାହିଁ । ବନଗଣ୍ଡ ସବୁବେଳେ ଗୋଟିଏ ଚିନ୍ତା । ସୁନା ରଙ୍ଗର ବାଳ ଯାହାର, ତାକୁ ଯେମିତି ହେଲେ ସେ ଦେଖିବେ ।

ପାତ୍ର ମନ୍ତ୍ରୀ ସହ ଆଲୋଚନା ଚାଲିଲା । ଶେଷକୁ ସ୍ଥିର ହେଲା ଯେ ରାଜ୍ୟର ସବୁ ବଣ୍ଡ, ବହୁଦର୍ଶୀ, ଜ୍ଞାନ ଓ ସୁପଣ୍ଡିତ ମାନଙ୍କୁ ଡକାହେବ । ସେମାନଙ୍କୁ ଏଭଳି ସ୍ତ୍ରୀ ଲୋକଙ୍କୁ ଖୋଜି ବାହାର କରିବାର ଦାୟିତ୍ୱ ଦିଆଯିବ ।

ବହୁ ବହୁଦର୍ଶୀ ନାନା ସଭାକୁ ଆସିଲେ । ତିନଜଣ ବହୁଦର୍ଶୀ ଛଡ଼ା ସମସ୍ତେ ସେମାନଙ୍କର ଅକ୍ଷମତା ପ୍ରକାଶ କଲେ । ପ୍ରଥମ ବହୁଦର୍ଶୀ କହିଲା—"ଯଦି ସେପରି ସ୍ତ୍ରୀଲୋକ ଏ ପୃଥିବୀରେ ବିଚରଣ କରୁଥାଏ, ମୁଁ ଖୋଜି ବାହାରି କରିପାରିବି ।"

ଦ୍ୱିତୀୟ ବହୁଦର୍ଶୀ କହିଲା—"ସେ ଯଦି ସ୍ୱର୍ଗରେ ଥାଆନ୍ତି, ତାହାହେଲେ ମୁଁ ଆକାଶ ଚିରି ତାଙ୍କୁ ଆଣି ଏଠି ହାଜର କରିବି ।"

ତୃତୀୟ ଜଣକ ଏସବୁ କଥା ଶୁଣି ଖୁବ୍ ହସିଲା । କହିଲା—"ତୁ ଯଦି ଆକାଶ ଚିରିଦେବୁ, ମୁଁ ଏପରି ତାଳି ପକାଇ ଦେବି ଯେ ତାଳି ପଡ଼ିଥିବା କଥା, କେହି ଜାଣି ପାରିବେ ନାହିଁ ।"

ରାଜା ତୃତୀୟ ଜଣକୁ ଖୁବ୍ ବୁଦ୍ଧିଆ ବୋଲି ଭାବିଲେ । ସୁନାରଙ୍ଗର ବାଳ ତାକୁ ଦେଇ, ସେହି କେଶବତୀ କନ୍ୟାକୁ ବାହାର କରିବାକୁ ଆଦେଶ ଦେଲେ ।

ବାଳ ତ ନଈରେ ଭାସି ଆସିଛି । ତେଣୁ ଉପର ମୁଣ୍ଡରେ ନଈ କୂଳରେ ସେ ସ୍ତ୍ରୀ ଲୋକ ବାସ କରେ । ଏହା ବୁଝି ଥିଲା

ବୁଦ୍ଧିମନ୍ତ ନାରୀର ବିଚକ୍ଷଣ । ତାର ଅନୁରୋଧରେ ରାଜା ଗୋଟିଏ ସୌଖିନ ସୁସଜ୍ଜିତ ନୌକା ଆଉ କିଛି ବାହାକ ତାକୁ ଯୋଗାଇ ଦେଲେ । ସେଇ ସୁସଜ୍ଜିତ ଡଙ୍ଗାରେ ସେ ଉପର ମୁଣ୍ଡକୁ ଯାତ୍ରା କଲା । ବାଟରେ ଯେଉଁଠି ଉନ୍ନତ ବସତି ଦେଖିବାକୁ ମିଳେ, ବୁଦ୍ଧିମନ୍ତ ନାରୀଟି ସେଠାରେ ଡଙ୍ଗାକୁ ଅଟକାଇବାକୁ କହେ । ସେ ଅଞ୍ଚଳ ବୁଲି ଖବର ସଂଗ୍ରହ କରେ । ମନ ତାର ମାନେ ନାହିଁ । ପୁଣି ଡଙ୍ଗା ଫେରାଇ ଉପର ମୁଣ୍ଡକୁ ଯିବାକୁ ଆଦେଶ ଦିଏ । ଏଇମିତି ବହୁ ଯାଗାରେ ଅଟକି ଅଟକି ସେମାନେ ଶେଷରେ ମୁସଲମାନ ପ୍ରେତର ମଖମଲମଲ ପ୍ରାସାଦ ପାଖରେ ଅଟକି ଗଲେ । ପ୍ରାସାଦଟି ଦେଖି ବୁଦ୍ଧିମନ୍ତ ନାରୀ ମୁଗ୍ଧ । ତାର ଭୂରି ଭୂରି ପ୍ରଶଂସା ନକରି ରହିପାରିଲା ନାହିଁ । ତାପରେ ଉଆସ ଚାରିପଟେ ବହୁବାର ବୁଲିଲା । କାହାକୁ ଦେଖିଲା ନାହିଁ । ବୁଢ଼ୀଟି ଆଶ୍ଚର୍ଯ୍ୟ । ମନେ ମନେ ଭାବିଲା—ଏଇ ଉଆସ ଭିତରେ କିଛି ଗୁଢ଼ ରହସ୍ୟ ଅଛି । ତାକୁ ଭେଦ ନ କଲେ ସଠିକ ଖବରଟି ମିଳିବ ନାହିଁ । ବୁଢ଼ୀଟି ଦିନ ସାରା ଡଙ୍ଗାରେ ବସି ଉଆସର ଦ୍ୱାର ଦେଶକୁ ଅନସା କରି ରହେ । ରାତି ହେଲେ ଡଙ୍ଗାରେ ଶୁଏ । କେତେ ଦିନ ଏପରି କଟିଗଲା ।

ଦିନକର କଥା । ସେଦିନ ଯୁବରାଜ ମୃଗୟାକୁ ଯାଇଥାନ୍ତି । ତାଙ୍କୁ ପାଛୋଟି ଦେବାକୁ ରାଜକୁମାରୀ ଦ୍ୱାରଦେଶ ପର୍ଯ୍ୟନ୍ତ ଆସିଲା । ବୁଢ଼ୀଟି ଡଙ୍ଗା ଉପରୁ ରାଜକୁମାରୀଙ୍କ କେଶଗୁଚ୍ଛ ଦେଖି ଆଶ୍ୱସ୍ତ । ଯାହାକୁ ସେ ଖୋଜୁଛି, ଏଠି ଯେ ସେ ରହୁଛି, ଏ ବିଷୟରେ ତାର ଆଉ ସନ୍ଦେହ ରହିଲା ନାହିଁ । ତାକୁ କପଟରେ ଭୁଲାଇ କରି ନେବ, ଏହା ଥିଲା ତାର ଏକମାତ୍ର ଚିନ୍ତା ।

ରାଜକୁମାର ଅଦୃଶ୍ୟ ହୋଇଯିବା ପରେ ବୁଢ଼ୀଟି ଉଆସର ପାଦ ଦେଶକୁ ଯାଇ ଖୁବ୍ ଜୋର୍‌ରେ କାନ୍ଦିବା ଲାଗିଲା । ରାଜକୁମାରୀ ତ ଉଆସରେ ଏକୁଟିଆ । ବୁଢ଼ୀର କାନ୍ଦଣା ଶୁଣି କବାଟ ଖୋଲିଲେ । ଏଠି ତ କୌଣସି ଲୋକଙ୍କୁ ଦେଖିବାକୁ ମିଳେ ନାହିଁ । ବୁଢ଼ୀଟିଏ ଯେ ଏଠାକୁ ଆସିଛି, ସେଥିପାଇଁ ରାଜକୁମାରୀ ଭାରି ଖୁସି । ତାକୁ ସେ ପଚାରିଲେ—"ମାଉସୀ, କଣ ହେଲା ? କଣ ପାଇଁ କାନ୍ଦୁଛ ।"

ବୁଢ଼ୀଟି କହିଲା—"ଝିଅଲୋ, ଜଙ୍ଗଲରେ ମୁଁ ଏଇବାଟ ଯାଉଥିଲି । ଶୁଣିଲି, ତୁମେ ରାଜକୁମାର ସାଥିରେ ଏଠି ରହୁଛ । ବନ୍ଧୁ ବାନ୍ଧବ ସାଙ୍ଗ ସାଥୀ ଚାକରବାକର କେହି ନାହାନ୍ତି । ମୁଁ ବୁଢ଼ୀ ଲୋକ । ତୁମେ ମୋର ନାତୁଣୀ ବୟସର । ତମକୁ ଦେଖି ମୋର ଶ୍ରଦ୍ଧା ହେଲା । ଝିଅଲୋ, ମୁଁ ତୋ ଭବିଷ୍ୟତ ବିଷୟରେ ଭାରି ବ୍ୟସ୍ତ । ଭଗବାନ ନ କରନ୍ତୁ, ଯଦି ରାଜପୁଅଙ୍କର ମୃତ୍ୟୁ ହୁଏ, ତୋ ଅବସ୍ଥା କ'ଣ ହେବ ଭାବି କାନ୍ଦ ମାଡ଼ିଲା । ହେଇଥି ପାଇଁ ମୁଁ କାନ୍ଦୁଥିଲି ।"

"ଠିକ୍ କଥା । ମୁଁ ବି ମୋ ଭବିଷ୍ୟତ କଥା କଳ୍ପନାରେ ଭାବି ନଥିଲି ।" ଦୁଇ ପାପୁଲିକୁ ମକଚି ମକଚି ରାଜାଝିଅ ଉତ୍ତର ଦେଲା ।

ତାପରେ ବୁଢ଼ୀ ବହୁତ ବିଷୟରେ କଥାବାର୍ତ୍ତା ହୋଇ ଜଙ୍ଗଲକୁ ଚାଲିଗଲା । ରାଜାଝିଅ ଉଆସକୁ ଆସି ବାରମ୍ବାର ନିଜ ଭବିଷ୍ୟତ ବିଷୟରେ ଚିନ୍ତା କରୁଥିଲା । ମଣିଷ ମନର କଥା ମୁହଁରେ ପ୍ରତିଫଳିତ ହୁଏ । ରାଜାଝିଅ ଆଜି ଗମ୍ଭୀର । ମୁହଁରେ ତାର ହସ ଆଉ ନାହିଁ ।

ଶାରଭୁଙ୍ଗ ରାଜ୍ୟକୁ ଫେରିଲେ । କିନ୍ତୁ ସବୁଦିନ ପରି ରାଜାଝିଅ ତାଙ୍କୁ ସମ୍ବର୍ଦ୍ଧନା ଜଣାଇଲା ନାହିଁ । ତାର କଥାବାର୍ତ୍ତାରେ ଶିଥିଳତା ଭାବ ରାଜପୁତ୍ର ଅନୁଭବ କଲେ । ରାଜପୁତ୍ର ପଚାରିବାରୁ ରାଜକନ୍ୟା କହିଲା—"ମୋର ଭବିଷ୍ୟତ ପାଇଁ ମୁଁ ଚିନ୍ତିତ । ତମର ଯଦି କିଛି ହୋଇଯାଏ, ମୁଁ କଣ କରିବି, ଏହା ହିଁ ଭାବୁଛି ।"

ଶାରଭୁଙ୍ଗ ରାଜକନ୍ୟାର କଥା ହସରେ ଉଡ଼ାଇ ଦେଲେ । କହିଲେ—"ମୋ ବିଷୟରେ ବ୍ୟସ୍ତ ହେବ ନାହିଁ । ମୋର ଜୀବନ ନିରାପଦ । ମୋର କେହି କିଛି କ୍ଷତି କରି ପାରିବେ ନାହିଁ ।"

ଏକଥା ଶୁଣି ରାଜକୁମାରୀ ସାନ୍ତ୍ୱନା ପାଇଲା । ହେଲେ, କେଉଁଠି ରାଜପୁତ୍ରର ଜୀବନ ନାଟିକା ଅଛି, ଜାଣିଲେ ତାକୁ ନିରାପଦ ଜାଗାରେ ସାଇତି ରଖିବ । ସେଥିପାଇଁ ଅଳିକଲା ।

ରାଜପୁତ୍ର କହିଲେ—"ପାଗଳୀ, ତୁ କ'ଣ ତାକୁ ସାଇତି ରଖିବୁ ? ମୁଁ ତାକୁ ସାଥିରେ ଧରି ବୁଲୁଛି । ସେ ହେଉଛି ମୋର ତୀକ୍ଷ୍ଣ ଶାଣିତ । ଅଣ୍ଟାରେ ମୁଁ ତାକୁ ଝୁଲାଇ ରଖିଛି । ମୋତେ କେବେହେଲେ ସେ ଧୋକା ଦେବ ନାହିଁ । ମୁଁ ଏକଥା ଜାଣିଛି । କିନ୍ତୁ ଏହା ଉପରେ ଆଞ୍ଚ ଆସିଲେ, ମୋର ମୃତ୍ୟୁ ଅନିବାର୍ଯ୍ୟ । ଯେହେତୁ ତାହା ମୋ ପାଖରେ ଅଛି, ଏ ପ୍ରକାର ପରିସ୍ଥିତି ଉପୁଜିବାର ସମ୍ଭାବନା ନାହିଁ ।"

"ଯେତେବେଳେ ତୁମେ ଶୀକାରକୁ ଯାଉଛ, ଘରେ ନିରାପଦ ଜାଗାରେ ଏହାକୁ ରଖି ଯିବା ଉଚିତ"—ଏହା ଥିଲା ରାଜାଝିଅର ଯୁକ୍ତି ।

ରାଜକୁମାର ହସି ହସି ଗଡ଼ିଯାଇ କହିଲେ—"ନିଜ ଦେହରେ ଥିଲେ, ସବୁବେଳେ ନିରାପଦ । ତେଣୁ ଘରେ ରଖିବା ଉଚିତ ହେବ ନାହିଁ ।"

ରାଜକୁମାରୀ ମନକୁ ଏକଥା ଜମା ପାଇଲା ନାହିଁ । ସେ ତ ରାଜକୁମାରର ସ୍ୱାସ୍ଥ୍ୟରେ ବହୁତ ବ୍ୟସ୍ତ । ପରଦିନ ସକାଳୁ ରାଜକୁମାରଙ୍କ ଖଣ୍ଡାଟି ସେ ନେଇଗଲା । ସିନ୍ଦୁକ ଭିତରେ କାଗଡ଼ଆରରେ ରଖିଦେଇ ଆଉ ଗୋଟିଏ ଖଣ୍ଡା ସେଇ ଖୋଳରେ ପୂରାଇ ଦେଲା । ଏକଥା ଖାର ଭୁଙ୍ଗ କିଛି ଜାଣିପାରିଲେ ନାହିଁ ।

ସେହିଦିନ ବି ଖାରଭୁଙ୍ଗ ଶିକାରକୁ ଚାଲିଗଲେ । ତାଙ୍କ ଯିବାର କିଛି ସମୟ ପରେ ବୁଢ଼ୀଟି ଆସି ପୁଣି ପାହାଚ ଉପରେ ବାହୁନିଲା । ତାର କାନ୍ଦ ଶୁଣି ରାଜକୁମାରୀ ପଦାକୁ ଆସି ବୁଢ଼ୀକୁ ପ୍ରବୋଧ ଦେଇ କହିଲେ—"ମାଉସୀ ତୁମେ ଆଉ କାନ୍ଦନା । ଯୁବରାଜଙ୍କ ଜୀବନ ନାଟିକା ତାଙ୍କ ଖଣ୍ଡାରେ । ଆଜି ମୁଁ ତାକୁ ଆମ ସିନ୍ଦୁକରେ ରଖି ଦେଇଛି ।"

ବଦମାସ ବୁଢ଼ୀ କାନ୍ଦ ବନ୍ଦ କରି ଭାରି ଖୁସିଟିଏ ହୋଇଗଲା । ତାପରେ ଗେହ୍ଲେଇ କରି କେତେ କଥା କହିଲା । ଉଆସ ଟିକିଏ ବୁଲି ଦେଖିବାକୁ ରାଜକୁମାରୀକୁ ପ୍ରବର୍ତ୍ତାଇଲା । ରାଜକୁମାରୀ ଭାରି ସରଳ । ବୁଢ଼ୀର ଛନ୍ଦକପଟ କିଛି ଜାଣିପାରିଲା ନାହିଁ । ମହା ଆନନ୍ଦରେ ସବୁ ଘର ବୁଲାଇ ଦେଖାଇଲା । ଏହା ଭିତରେ ବୁଢ଼ୀଟି କେଉଁ ସିନ୍ଦୁକରେ ଖଣ୍ଡା ରଖିଛ ବୋଲି ପଚାରିଲା । ଭୋଳୀ ରାଜକୁମାରୀ ସେ ସିନ୍ଦୁକ ବି ଦେଖାଇ ଦେଲା ।

ବୁଢ଼ୀଟି ଆଉ ଉଆସକୁ ଆସିଲା ନାହିଁ । ମଧ୍ୟାହ୍ନ ଭୋଜନ ପରେ ରାଜକୁମାରୀଙ୍କର ଶୋଇବା ଅଭ୍ୟାସ । ସେ ଖାଇସାରିଲା ପରେ ଶୋଇଗଲେ । ବୁଢ଼ୀଟି ଏଇ ମଉକାରେ ସିନ୍ଦୁକରୁ ଖଣ୍ଡାଟି ନେଇ ଆସିଲା । ବାହାରେ ଖୁବ୍ ନିଆଁ ଜାଳି ଖଣ୍ଡାଟି ପକାଇ ଦେଲା । ଖଣ୍ଡାଟି ଯେମିତି ତାତିଛି ରାଜପୁଅର ଦେହ ଜଳି ପୋଡ଼ି-ଗଲା । ସେ ତାର ଖଣ୍ଡା ବାହାର କରି ଦେଖିଲେ ଯେ ତାହା

ବଦଳି ଯାଇଛି । ସେ ଘଉ ମୁହାଁ ଘୋଡ଼ା ଛୁଟାଇ ଦେଲେ । ବୁଢ଼ୀଟି ଖୁବ୍ ଜୋରରେ ନିଆଁ ଜାଳୁଥାଏ । ସେ ଉତ୍ତରେ ଖଣ୍ଡାଟି ଲାଲ୍ ଟକଟକ ହୋଇଗଲା । ତା ଦେହରୁ ବେଶି ଝାଳ ଝରିଗଲା । ରାଜା-ପୁଅ ଆଉ ଆଗେଇ ପାରିଲେ ନାହିଁ । ବେକ ତାଙ୍କର ନଇଁକି ପଡ଼ିଲା । ସେ ଘୋଡ଼ା ଉପରୁ ଗଡ଼ି ତଳେ ପଡ଼ିଗଲେ ।

କିଛି ସମୟ ପରେ ରାଜକୁମାରୀର ନିଦ ଭାଙ୍ଗିଲା । ସେ ତ ଏସବୁ କିଛି ଜାଣି ନଥାଏ । ବୁଢ଼ୀଟି ତା ପାଖକୁ ଆସି କହିଲା— "ମୋ ମା'ଟା କେଡେ ସୁନ୍ଦର । ଶୋଇ ଉଠିବାରୁ ବାଳଗୁଡ଼ିକ ଝାଉଁଆ ହୋଇ ଯାଇଛି । ତେଣୁ ଅସୁନ୍ଦର ଦେଖା ଯାଉଛି । ଜ୍ୱାଇଁ ଆସିବା ପୂର୍ବରୁ ମୁଁ ତୋତେ ସଜାଇ ଦେବି । ଗୋଟିଏ ପରି ଭଲ ଦେଖାଯିବୁ । ଜ୍ୱାଇଁ ଖୁବ୍ ଖୁସି ହୋଇଯିବେ ।"

ରାଜକୁମାରୀର ମନା କରିବାର କାରଣ କିଛି ନଥିଲା । ପାନିଆ ଧରି ବୁଢ଼ୀଟି ରାଜକୁମାରୀ ମୁଣ୍ଡ କୁଣ୍ଡାଇବାକୁ ବସିପଡ଼ିଲା । ଟିକିଏ କୁଣ୍ଡାଇଛି କି ନାହିଁ, କହିଲା—"ମଲାମୋର, ଏ ଆଖିକି କିଛି ଦିଶୁନାହିଁ । ଟିକିଏ ବାହାରକୁ ଗଲେ, ଭଲ କରି ଦେଖାଯିବ । ମୁଣ୍ଡ କଟିଆ ଭାବରେ ବାନ୍ଧି ଦେବି ।"

ରାଜକୁମାରୀ ବୁଢ଼ୀର କଥାରେ କଣି ହୋଇ ଯାଇଛି । ବୁଢ଼ୀ ଆଗେ ଆଗେ ସେ ତାର ପଛେ ପଛେ ଚାଲିଲେ । ମଖମଲମଲ ପାହାଚ ଡେଇଁ ସେମାନେ ନଦୀ ଭିତରକୁ ଓହ୍ଲାଇ ଆସିଲେଣି । ବୁଢ଼ୀ କହିଲା—"ଆଉପଟ ପାଣି ପରିଷ୍କାର । ଏପଟ ପାଣି ଘୋଳିଆ । ଆ ଆରପଟକୁ ଡଙ୍ଗାରେ ଯିବା ।" ରାଜକୁମାରୀର ବାଳ ଗୁଡ଼ିକ ତା ମୁହଁରେ ଓଢ଼ଣା ପରି ପଡ଼ିଥିଲା । ତେଣୁ ସେ ପରିଷ୍କାର ଭାବରେ କିଛି ଦେଖିପାରୁ ନଥିଲା । ଏହାର ସୁବିଧା

ନେଇ ବୁଢ଼ୀଟି ଡଙ୍ଗା ଖୋଲିଦେଲା । ଡଙ୍ଗାଟି ନଦୀର ସ୍ରୋତ ଅନୁକୂଳ ଦିଗରେ ଭାସିଗଲା ।

ବୃଥାରେ ରାଜକୁମାରୀ ଖୁବ୍ କାନ୍ଦିଲା । ଶେଷକୁ ସେ ଉପ୍ତଙ୍କର ଏକ ଶପଥ କଲା । କହିଲା—"ବଦମାସ୍ ଅଲକ୍ଷଣୀ ବୁଢ଼ୀ । ମୁଁ ଜାଣୁଛି, ତୁ ମତେ କୌଣସି ରାଜଉଆସକୁ ନେଉଛୁ । ସେ, ଯେ ହେଉନା କାହିଁକି, ମୁଁ ଶପଥ କରୁଛି ମୁଁ ବାରବର୍ଷ ପର୍ଯ୍ୟନ୍ତ ତା ମୁହଁକୁ ଦେଖିବି ନାହିଁ ।"

ସେମାନେ ଶେଷକୁ ରାଜ ଉଆସରେ ପହଞ୍ଚିଲେ । ରାଜକୁମାରୀ ଆସିଥିବାର ଖବର ପାଇ ରାଜା ଭାରି ଖୁସି । ରାଜକୁମାରୀ ଶପଥ କଥା ତାଙ୍କୁ ଜଣେଇ ଦିଆଗଲା । ରାଜା ଏକଥା ଶୁଣି ଗୋଟିଏ ସ୍ୱତନ୍ତ୍ର ଅଟ୍ଟାଳିକା ତିଆରି କରିଦେଲେ । ସେଇଠି ରାଜକୁମାରୀକୁ ରଖାଗଲା । ଚାରିପଟେ ଦୃଢ଼ ପହରା । କେବଳ ପାଣିକାଲି ଆଉ କାଠ ଚଉକି ଛଡ଼ା ତା ଭିତରକୁ କୌଣସି ପୁରୁଷକୁ ଯିବା ଦିଆ ଯାଉନଥିଲା ।

ରାଜକୁମାରୀ ସେଠି ଦା'ସୀ ଗହଣରେ ରହୁଥାଏ । ବେଳେ-ବେଳେ ରାଜକୁମାରୀକୁ ନେଇ ଯାଇଥିବା ବୁଢ଼ୀ ଆଉ ରାଜାଙ୍କର ଭଉଣୀ ସେଠାକୁ ଆସନ୍ତି । ରାଜକୁମାରୀ କାହା ସାଥୀରେ କଥାବାର୍ତ୍ତା କରେ ନାହିଁ । ଚୁପ୍ ହୋଇ ବସିରହେ । ସବୁବେଳେ ଖାରଭେଳଙ୍କୁ ମନେ ପକାଇ କାନ୍ଦେ ।

ଏଣେ ଖାରଭେଳଙ୍କ ନିଦ ଯେତେବେଳେ ଭାଙ୍ଗିଲା ପରିଲା, ସେ ଦେଇଥିବା ସାବଧାନ ଗଛ ସବୁ ମଉଳିଗଲା । ସାହାଣଦିଆ ବଢ଼େଇ ଓ କମାର ବନ୍ଧୁମାନେ ବ୍ୟସ୍ତ ହୋଇ ପଡ଼ିଲେ । ସାଥୀରେ ସୈନ୍ୟସାମନ୍ତ ଧରି ସେଷ୍ଟା ରାଜଧାନୀରୁ ଖାରଭେଳଙ୍କୁ ଖୋଜି

ବାହାରିଲେ । ଭାଗ୍ୟକୁ ସେମାନଙ୍କର ଭେଟ ହୋଇଗଲା । ସେମାନଙ୍କ ଆଲୋଚନାରୁ ଜଣାଗଲା ଯେ ସବୁ ଯବଧାନଗଛ ଏକା ସମୟରେ ଏକା ଭଳିଆ ମଉଳୁଛନ୍ତି ।

ଶାରଭୁଙ୍ଗ ପ୍ରଖ୍ୟାତ । ତାଙ୍କ ଖବର ଜାଣିବାକୁ ବେଶୀ କଷ୍ଟ ହେଲନାହିଁ । ସେମାନେ ଶାରଭୁଙ୍ଗ ରହୁଥିବା ଅଞ୍ଚଳରେ ବୁଲିବୁଲି ଖୋଜିବାବେଳେ ରାଜପୁତ୍ରଙ୍କୁ ନଦୀଧାରରେ ଠାବ କଲେ । ସେ ଛଳେ ପଡ଼ିଥାନ୍ତି । ତାଙ୍କ ବେକ ନଇଁକି ଯାଇଛି । ଦେହରେ ତାଙ୍କର ଅଧିକାଂଶ ଜାଗାରେ ପୋଡ଼ାଚିହ୍ନ । ସେମାନେ ରାଜପୁତ୍ରଙ୍କ ଖଣ୍ଡାର କରାମତି ବିଷୟରେ ଜାଣିଥିଲେ । ତାଙ୍କ ଅଣ୍ଟାରୁ ଖଣ୍ଡା ବାହାର କରି ଆଶ୍ଚର୍ଯ୍ୟ ହୋଇଗଲେ । ରାଜକୁମାରଙ୍କ ଖଣ୍ଡା ବଦଳି ଯାଇଛି । ସେମାନଙ୍କର ଦୁଃଖର ସୀମା ରହିଲା ନାହିଁ । ସେମାନେ କାନ୍ଦୁଥାନ୍ତି । ତାଙ୍କର ଶରୀରକୁ ସେମାନେ ଉଠାଇ ଉଆସକୁ ନେଇଗଲେ । ଉଆସଟି ଭାରି ସୁନ୍ଦର । କିନ୍ତୁ କେହି ଲୋକ ସେଠାରେ ନାହାନ୍ତି । ଏକଥା ଦେଖି ତିନି ବନ୍ଧୁ ବିସ୍ମିତ । ଆଶ୍ଚର୍ଯ୍ୟ । ରାଜକୁମାରଙ୍କର ଦୁର୍ଦ୍ଦଶାର ସଙ୍କେତ କାଳେ କିଛି ମିଳିଯିବ, ଏଇ ଆଶାରେ ସେମାନେ ଉଆସର ଅନ୍ଧିସନ୍ଧି ଖୋଜି ବୁଲିଲେ । ଭାଗ୍ୟକୁ ଖଣ୍ଡାଟା ମିଳିଗଲା । ତାହା ପାଉଁଶ ଗଦାରେ ପଡ଼ିଛି । ଦେହରେ ତାର ଅସଂଖ୍ୟ ପୋଡ଼ା ଦାଗ । କେଣ୍ଟ ତା ଦେହରେ ନାହିଁ । ଖିଲଟି ସେଠି ପଡ଼ିଛି ।

"ଏହା ମରାମତି କରିହେବ" । କମାର ରାଜା ଚିତ୍କାର କଲା । ସାଙ୍ଗେ ସାଙ୍ଗେ ନିଆଁ କରି ଖଣ୍ଡାରେ କେଣ୍ଟ ଲଗାଇ ଖିଲ ମାରି-ଦେଲା । ଖଣ୍ଡାରେ କେଣ୍ଟ ଲାଗିବା ମାତ୍ରେ ରାଜପୁତ୍ରର ମୁଣ୍ଡ ସଳଖ ହୋଇଗଲା ।

"ଏଥର ମୋ ପାଳି ।" ସାହାଣଦଆ ରଜା କହି ଉଠିଲା । ତାର ସାହାଣ କରୁଥିବା ଚକକୁ ବୁଲାଇ ଖଣ୍ଡାରେ ଥିବା ଘୋଡା ଓ ଅନ୍ୟାନ୍ୟ ଦାଗ ଛଡ଼ାଇ ଦେଲା । ପୂର୍ବଭଳି ଖଣ୍ଡାଟି ଚକ୍‌ଚକ୍ ମାରିଲା । ସାଙ୍ଗେ ସାଙ୍ଗେ ପୋଡା ଘା' ଦାଗ ଗାରଭୁଙ୍ଗଙ୍କ ଦେହରୁ ଉଭେଇଗଲା । ସେ ଉଠି ବସିଲେ । ପୂର୍ବଭଳି ସେ ତେଜସ୍ୱୀନ ଦେଖା ଯାଉଥିଲେ ।

"ମୋ ରାଜକୁମାରୀ କାହିଁ" ଏ ଥିଲା ତାଙ୍କର ପ୍ରଥମ ପ୍ରଶ୍ନ ।

ସେ ବିଷୟରେ ହାଙ୍ଗମାନେ କିଛି ଜାଣି ନାହାନ୍ତି ବୋଲି କହିଲେ । କିପରି ସେମାନେ ଆସି ତାଙ୍କୁ ଉଦ୍ଧାର କଲେ; ତାହାହିଁ ସେମାନେ ଜଣାଇ ଦେଲେ ।

ଗାରଭୁଙ୍ଗ କିପରି ଏଠାକୁ ଆସିଲେ ଆଉ ଏଠି କ'ଣ ସବୁ ଘଟିଗଲା ତାହା ପ୍ରାଞ୍ଜଳ ଭାବରେ ବୁଝାଇ କହିଲେ ।

"ଏଥର ମୋ ପାଳି । ମୋତେ ଖଣ୍ଡାଟା ଦିଅନ୍ତୁ । ମୁଁ ରାଜକୁମାରୀକୁ ନେଇ ଆସିବି ।" ବଢ଼େଇ ରାଜା କହିଲା ।

ସମସ୍ତେ ତା କଥାରେ ସମ୍ମତି ଦେଲେ । ବଢ଼େଇ ରାଜା ହାତରେ ଖଣ୍ଡାଟି ଧରି ବାହାରି ପଡ଼ିଲା । ଅଳ୍ପ ସମୟ ଭିତରେ ରାଜକୁମାରୀ ଥିବା ରାଜଧାନୀରେ ସେ ପହଞ୍ଚିଗଲା । ସେଠି ସେ ଶୁଣିଲା —ଗୋଟିଏ ରାଜକନ୍ୟାକୁ ରଜା ଅପହରଣ କରି ଆଣିଛନ୍ତି । ତାଙ୍କୁ ଏକାକୀ ନୂତନ ଅଟ୍ଟାଳିକାରେ ରଖିଛନ୍ତି । ପାଣିବାଲା ଓ କାଠ ଦକା ବାଲା ଛଡ଼ା ଆଉ କେହି ପୁରୁଷକୁ ସେଠାକୁ ଯିବାକୁ ମନା । ଏଇଠାରେ ଯେ ରାଜକୁମାରୀଙ୍କୁ ରଖା ଯାଇଛି, ଏ ବିଷୟରେ ବଢେଇରଜା ଦୃଢ଼ ।

ସେ ନିଜକୁ କାଠୁରିଆ ବେଶରେ ସଜାଇଲେ । ଅଟ୍ଟାଳିକା ପାଖକୁ ଯାଇ କହିଲେ—"କାଠ କିଏ ନେବ କାଠ, ଏଇ କାଠର ମୂଲ୍ୟ ପନ୍ଦର ସୁନା ମୋହର ।"

ପବନ ଖାଇବାକୁ ରାଜକୁମାରୀ ଛାତ ଉପରେ ବସିଥିଲେ । ବଢ଼େଇ ରାଜାର ପାଟି ଶୁଣି ସେ ଆଶ୍ଚର୍ଯ୍ୟ ହେଲେ । ତାର କୌତୁହଳ ବଢ଼ିଲା । କ'ଣ ସେ କାଠ ଯେ ତାର ଦାମ୍ ଏତେ ବୋଲି ଦାସୀମାନଙ୍କୁ ଆଦେଶ ଦେଲେ । ଦାସୀମାନଙ୍କ ପ୍ରଶ୍ନରେ ବଢ଼େଇରାଜା କହିଲେ—"ଏହା ଜାଳେଣି କାଠ ସତ । କିନ୍ତୁ ଏହା ଏଇ ଲକ୍ଷଣ ଖଣ୍ଡାରେ କଟା ହୋଇଛି । ସେଥିପାଇଁ ଏହାର ଦାମ୍ ବଢୁଚି ।"

ଏକଥା ଶୁଣି ରାଜକୁମାରୀର ଗ୍ରୁଣ୍ଡ ପଡ଼ିଲା ଓ ଉଠିଲା । ସେ ପାରପେଟର ଛିଦ୍ର ବାଟେ ଖଣ୍ଡାକୁ ଦେଖିଲେ । ସେ ଖଣ୍ଡା ଯେ ସାରଭୁଙ୍ଗଙ୍କ ଖଣ୍ଡା, ଏଥିରେ ତାର ସନ୍ଦେହ ନଥିଲା । ଆଜି କ'ଣ କାଠୁରିଆ ବିକବାକୁ ବୁଲୁଁଛି, ସେ ଜାଣିବାକୁ ଚାହିଁଲେ ।

କାଠୁରିଆ କହିଲେ—"ମୋ ପାଖେ ଉଡ଼ନ୍ତା ପାଲିଙ୍କି ଅଛି । ଯଦି ରାଜକୁମାରୀ ସନ୍ଧ୍ୟାରେ ବଗିଚାକୁ ବୁଲି ଆସନ୍ତେ, ତାହାହେଲେ ତାଙ୍କୁ ମୁଁ ପାଲିଙ୍କି ଦେଖାଇ ଦିଅନ୍ତି ।"

ରାଜକୁମାରୀ ଏ ପ୍ରସ୍ତାବରେ ରାଜି । ବଢ଼େଇ ଦିନଯାକ ଲାଗି ପାଲିଙ୍କି ସଜାଇଲେ । ତାପରେ ତାକୁ ନେଇ ବଗିଚାରେ ରଖିଲେ ।

ରାଜକୁମାରୀ ସନ୍ଧ୍ୟାରେ ବଗିଚାକୁ ଆସିବାରୁ, ବଢ଼େଇ ତାଙ୍କୁ ପାଲିଙ୍କିରେ ବସିବାକୁ ଅନୁରୋଧ କଲେ । ରାଜାଙ୍କର ଭଉଣୀ ଆଉ ବଦମାସ ବୁଢ଼ୀ ରାଜକୁମାରୀକୁ ଏକୁଟିଆ ବସିବାକୁ

ମନା କଲେ । କିନ୍ତୁ ବଡ଼େଇରାଜା କହିଲା—ଆପଣମାନେ ସମସ୍ତେ ଏଥିରେ ବସି ପାଲିଙ୍କିର କରାମତି ଦେଖନ୍ତୁ ।

ବଡେଇ ରାଜା ସମେତ ରାଜକୁମାରୀ, ବଦମାସ୍ ବୁଢ଼ୀ ଓ ରାଜାଙ୍କ ଭଉଣୀ ପାଲିଙ୍କିରେ ବସିଲେ । ସାଙ୍ଗେ ସାଙ୍ଗେ ବଡ଼େଇ ରାଜାର ଇଙ୍ଗିତରେ ପାଲିଙ୍କି ଚଟ୍ଟ କରି ଉଡ଼ିବାରେ ଲାଗିଲା । କିଛି ସମୟ ପରେ ରାଜାଙ୍କ ଭଉଣୀ କହିଲା—"ଯଥେଷ୍ଟ ହୋଇଗଲା । ଚାଲ୍ ବଗିଚାକୁ ଫେରିଯିବା ।"

ବଡ଼େଇ ରାଜା ତା'ର ଅଣ୍ଟାକୁ ଧରି ତଳକୁ ଫିଙ୍ଗିଦେଲା । ସେତେବେଳକୁ ପାଲିଙ୍କି ନଦୀ ଉପରେ ଉଡ଼ୁଥାଏ । ରାଜାଙ୍କ ଭଉଣୀ ନଦୀରେ ପଡ଼ି ବୁଡ଼ିମଲା ।

ପାଲିଙ୍କିଟି ସେତେବେଳେ ଅଟ୍ଟାଳିକା ଉପର ଦେଇ ଉଡ଼ିଲା, ବଡ଼େଇରାଜା ବଦମାସ ବୁଢ଼ୀକୁ ଠେଲି ଫିଙ୍ଗିଦେଲା । ଅଟ୍ଟାଳିକା ଦେହରେ ବାଜି ବୁଢ଼ୀର ସମସ୍ତ ଶରୀର ଛିନ୍ଭିନ୍ ହୋଇଗଲା ।

ଖାରଭୁଙ୍ଗ କମାର ରାଜା ଓ ସାହାଣବାର ରାଜା ଗହଣରେ ଉଆସରେ ବଡ଼େଇ ରାଜାଙ୍କୁ ଅପେକ୍ଷା କରିଥିଲେ । ଡେରି ହେବାରୁ ସେମାନେ ଅଧୈର୍ଯ୍ୟ । ବ୍ୟତିବ୍ୟସ୍ତ । ଏତିକିବେଳେ ପାଲିଙ୍କିଟି ଉଡ଼ି ଉଡ଼ି ପ୍ରେତର ଉଆସରେ ଓହ୍ଲାଇଲା । ରାଜକୁମାରୀକୁ ଦେଖି ଯୁବରାଜ ଖାରଭୁଙ୍ଗ ଭାରି ଖୁସି । ସେଠାରେ ଆଉ ରହିବା ଦରକାର ନୁହେଁ । ଏହା ବିଚାରି କରି ତିନିବନ୍ଧୁ ଗହଣରେ ଖାରଭୁଙ୍ଗ ନିଜ ରାଜ୍ୟକୁ ଫେରିଲେ । ସାଥିରେ ତିନି ରାଜାଙ୍କର ସୈନ୍ୟ ସାମନ୍ତ ।

ବାପା ତାଙ୍କର ଏହା ଭିତରେ ବୁଢ଼ା ହୋଇଗଲେଣି ପୁଅ ବିଚ୍ଛେଦରେ ସେ ଜର୍ଜରିତ ପଡ଼ିଥାନ୍ତି । ଏତିକିବେଳେ ଖବର ଆସିଲା—

ତିନିଜଣ ରାଜା ସମ୍ମିଳିତ ଭାବରେ ତାଙ୍କ ରାଜ୍ୟ ଆକ୍ରମଣ କରିବାକୁ ଆସୁଛନ୍ତି । ରାଜା ଏ ଖବର ପାଇ ଖୁବ୍ ବ୍ୟସ୍ତ ହେଲେ । ଭାବିଲେ—ପୁଅ ଯଦି ତାଙ୍କର ଥାଆନ୍ତା, ଆଜି ଯୁଦ୍ଧକରି ଶତ୍ରୁକୁ ନିର୍ମୂଳ କରି ଦେଇଥାଆନ୍ତା । ସେତ ବହୁଦିନ ହେଲା ଚାଲି ଯାଇଛି । ଖବର ଅନ୍ତର ନାହିଁ । କ'ଣ ବା ସେ କରିବେ ? ଯୁଦ୍ଧ କରିବାକୁ ରାଜା ସେତେବେଳେ ଅସମର୍ଥ, ଅଯଥା ସୈନ୍ୟଙ୍କୁ ମାରି ଲାଭ ନାହିଁ । ବରଂ ଆତ୍ମସମର୍ପଣ କରିବା ଉଚିତ । ସେମାନେ ଯାହା ଧନ ଦଉଲତ ଲୁଟିବେ, ନେଲେ ଖୁସି ହେବେ । ପ୍ରଜା ପାଟକ ବଞ୍ଚିଯିବେ । ଏହା ସ୍ଥିର କରି ନିଜେ ତାଙ୍କ ରାଜ୍ୟକୁ ଆସୁଥିବା ରାଜାମାନଙ୍କ ପାଖକୁ ଗଲେ ।

ଦୂରରୁ ବାପାଙ୍କୁ ଦେଖି ୱାରିଗୁଙ୍ଗ ଧାଇଁଯାଇ ତାଙ୍କ କାନ୍ଧରେ ଓହଳି ପଡ଼ିଲେ । ଯାହାସବୁ ଘଟିଥିଲା ସେ ସବୁ ସେ କହିଲେ । ତାର ତିନିବନ୍ଧୁ ଯେ ତାକୁ ଉଦ୍ଧାର କରିଛନ୍ତି ସେ କଥା ବର୍ଣ୍ଣନା କରିଲେ ।

ରାଜା ଏସବୁ ଶୁଣି ଆନନ୍ଦରେ ଅଭିଭୂତ । ପୁଅ ଓ ବୋହୂଙ୍କୁ ଆଲିଙ୍ଗନ କଲେ । ରାଜା ଓ ରାଣୀଙ୍କର ଆନନ୍ଦ କହିଲେ ନସରେ ।

ସମସ୍ତ ରାଜ୍ୟର ପ୍ରଜାମାନେ ଆନନ୍ଦରେ ମାତିଲେ । ରାଜାଙ୍କ ପରେ ୱାରିଗୁଙ୍ଗ ରାଜା ହେଲେ । ସମସ୍ତ ପ୍ରଜା ତାଙ୍କ ଅମଳରେ ବେଶ୍ ସୁଖ ଶାନ୍ତିରେ ରହିଲେ ।

—o—

# ପୃଥିବୀର ଲୋକକଥା

୧ । ଭିଏତ୍‌ନାମ
୨ । ଲାଦାଖ (୧)
୩ । ଲାଦାଖ (୨)
୪ । ପଞ୍ଜାବ (୧)
୫ । ପଞ୍ଜାବ (୨)
୬ । ପଞ୍ଜାବ (୩)
୭ । ପଞ୍ଜାବ (୪)
୮ । ପଞ୍ଜାବ (୫)
୯ । ପଞ୍ଜାବ (୬)
୧୦ । ପଞ୍ଜାବ (୭)
୧୧ । ଉତ୍ତର ପ୍ରଦେଶ (୧)
୧୨ । ଉତ୍ତର ପ୍ରଦେଶ (୨)
୧୩ । ଉତ୍ତର ପ୍ରଦେଶ (୩)
୧୪ । ଉତ୍ତର ପ୍ରଦେଶ (୪)
୧୫ । ମଧ୍ୟପ୍ରଦେଶ (୧)
୧୬ । ଆସାମ (୧)
୧୭ । କାଶ୍ମୀର (୧)
୧୮ । କାଶ୍ମୀର (୨)
୧୯ । କାଶ୍ମୀର (୩)
୨୦ । ଇହୁଦୀ (୧)
୨୧ । ହିମାଚଳ ପ୍ରଦେଶ (୧)
୨୨ । ଆସାମ (୨)
୨୩ । ଋଷିଆ (୧)
୨୪ । ସାନ୍ତାଳ (୧)
୨୫ । ଇଟାଲୀ (୧)
୨୬ । ମଧ୍ୟପ୍ରଦେଶ (୨)
୨୭ । ଇହୁଦୀ (୨)
୨୮ । ଶ୍ରୀଲଙ୍କା (୧)
୨୯ । ଶ୍ରୀଲଙ୍କା (୨)
୩୦ । ସାନ୍ତାଳ (୨)
୩୧ । ସାନ୍ତାଳ (୩)
୩୨ । ସାନ୍ତାଳ (୪)
୩୩ । ସାନ୍ତାଳ (୫)
୩୪ । ସାନ୍ତାଳ (୬)
୩୫ । ସାନ୍ତାଳ (୭)
୩୬ । ସାନ୍ତାଳ (୮)
୩୭ । ସାନ୍ତାଳ (୯)
୩୮ । ସାନ୍ତାଳ (୧୦)
୩୯ । ସାନ୍ତାଳ (୧୧)
୪୦ । ସାନ୍ତାଳ (୧୨)
୪୧ । ସାନ୍ତାଳ (୧୩)
୪୨ । ସାନ୍ତାଳ (୧୪)
୪୩ । ନେପାଳ (୧)
୪୪ । ଇହୁଦୀ (୩)
୪୫ । ଇହୁଦୀ (୪)
୪୬ । ନେପାଳ (୨)
୪୭ । ତିବ୍ବତ (୧)
୪୮ । ଚୀନ୍ (୧)
୪୯ । ହରିଆନା (୧
୫୦ । ଜାପାନ (୧

**ନୀଳକଣ୍ଠେଶ୍ୱର ଶିକ୍ଷା ପ୍ରକଳ୍ପ**
**ଗୋ ଦିଘାଳ, ଜି. - ପୁରୀ**